

ଅଷ୍ଟମଲ୍ଲିକାଧୀଶ୍ବର
ରାଜା ଶ୍ରୀ ଶ୍ରୀ ଶ୍ରୀ କିଶୋରଚନ୍ଦ୍ର ଦେବ

# ବନ୍ଦନ

ବୀଣାପାଣି-ପୁଣ୍ୟ-ବେଦିକା—
ଚିର-ପ୍ରବୋଧୀ ବୀର !
ହୋମ-ପୂଜା-ଧୂମ ବ୍ୟାପଇ
ତବ ଧରଣୀ ଶିର ।

ନିରେଖି ସେ ଧୂମ-କୁଣ୍ଡଳୀ
ଦୂର ଶବଳ-ବାସେ
ଅର୍ପିଛୁ ଏ ଦୀନ ପୂଜାର୍ଘ
ପୂଜ୍ୟ-ବେଦିକା ପାଶେ ।

ଥଣିଛୁ ଅହର ଅଗ୍ରହେ
ଏହି ହୋମ-ସାଧନ
ଯେନା ହେଲ ଅହେ ରାଜର୍ଷି ।
ଗୁଣଗ୍ରାହୀ-ରଞ୍ଜନ ।

ସ୍ୱସ୍ୱବେ ତୁମ୍ଭେ ତ ଉଦାର
ପୁଣି ମହତପ୍ରାଣ
ଘୋଷଇ ଉତ୍କଳ ତୁମ୍ଭର
ଯଶ ମହିମା ଗାନ !

ଯାଇ ହେ କରୁଣା-ଅଧାର !

ତବ କରୁଣା-ବାରି

ଲଭନ୍ତି ତୃପତ ତୃଷିତ

ଭେଟେ ବିଜନ-ଗୃସ୍ଥ ।

ସୁଷମିତ ତବ ଯତନେ

ଅଜ୍ଞ ସାହିତ୍ୟ-ମରୁ

ହସଇ ପଲ୍ଲବ-ସୋହାଗେ

ଶତ ତରୁଣ ତରୁ ।

ଧୀରବର ବୀରହୃଦୟ !

ଶୂରକୁଳମଣ୍ଡନ ।

କରେ ବୀରବାଳା 'ଭବାନୀ'

ତବ ପାଦ ବନ୍ଦନ;

ଘେନ ତାର ପ୍ରାଣ-ପ୍ରଣତ

ଅଘେ ସ୍ରଜମଣ୍ଡଳ ।

'କିଶୋର' କୋମଳ ଶ୍ରୀକରେ

ଦଅ ଅଶିଷ-ଧୂଳି ।

ବିନୀତ

ପ୍ରଣେତା

## ଉତ୍କଳର ଲବ୍ଧପ୍ରତିଷ୍ଠ ବିଶିଷ୍ଟ ସାହିତ୍ୟିକମାନଙ୍କର

# କାବ୍ୟ ସମ୍ବନ୍ଧରେ ଅଭିମତ

### ୧

ଶ୍ରୀମାନ୍ ଭୁବନେଶ୍ୱର ମିଶ୍ରଙ୍କର ଅସାଧାରଣ ପ୍ରତିଭା ତାଙ୍କ ପ୍ରକାଶିତ 'ପ୍ରତିଜ୍ଞା' କାବ୍ୟରେ ଆମ୍ଭେମାନେ ଏଥି ପୂର୍ବରୁ ଦେଖିଥିଲୁଁ । ପ୍ରବନ୍ଧଲେଖକ ରୂପେ ସେ ଗତବର୍ଷ ଉତ୍କଳସାହିତ୍ୟ-ସମାଜରୁ ପୁରସ୍କାର ପାଇଥିଲେ । ତାଙ୍କର ଅପ୍ରକାଶିତ 'ଭବାନୀ' କାବ୍ୟର କେତେକ ଅଂଶ ମୁଁ ଦେଖିଅଛି । ଉତ୍କଳର ଲବ୍ଧପ୍ରତିଷ୍ଠ ସାହିତ୍ୟିକମାନଙ୍କର ଅଭିମତ ଅପେକ୍ଷା ମୁଁ ଅଧିକ କିଛି କହିପାରୁ ନାହିଁ । କବି ନିର୍ଧନ; ମୁଁ ଆଶା କରେ, ଏ କାବ୍ୟକୁ ପ୍ରକାଶିତ କରିବା ପାଇଁ ଉତ୍କଳରେ କାବ୍ୟାମୋଦୀ ଧନିକ ଓ ନରେଶ୍ୱର-ମାନଙ୍କ ମଧ୍ୟରୁ କେହି ଅଗ୍ରସର ହେବେ । କବି ସର୍ବଥା ଉତ୍ସାହ ପାଇବା ଯୋଗ୍ୟ ଓ ଉପଯୁକ୍ତ ଅର୍ଥ ସାହାଯ୍ୟ ଲାଭ କଲେ ସେ ଉତ୍କଳସାହିତ୍ୟ-ଭଣ୍ଡାରରେ ଗୁଡ଼ିଏ ରତ୍ନ ସଞ୍ଚୟ କରିପାରନ୍ତେ ।

ଭାଷାକୋଷ ଅଫିସ, କଟକ
ତା ୨୨।୧୦।୩୫

ଗୋପାଳଚନ୍ଦ୍ର ପ୍ରହରାଜ

### ୨

ଗୀତସାମ୍ବଳ 'ଭବାନୀ'ର ପାଣ୍ଡୁଲେଖ୍ୟ ପାଠ କରି ମୁଁ ମୁଗ୍ଧ ହେଲି । ସୁପରିଚିତ ଛନ୍ଦବାର ଅତିରିକ୍ତ କେତୋ ଗୀତ ଗାଇବାକୁ ଭୂଷା ପରଲୁଗା ପିନ୍ଧି ରଙ୍ଗାଳୟରେ ଆବିର୍ଭୂତ ହୋଇ ନାହାନ୍ତି । ତାହାଙ୍କର କଳ୍ପନାରେ ନୂତନତ୍ୱ ଓ ଚିତ୍ରଣରେ ପରିସ୍ଫୁଟନ

ପୂର୍ଣ୍ଣ ମାତ୍ରାରେ ଦେଦୀପ୍ୟମାନ । ଏହି କାବ୍ୟରେ ରଚକ ମହାଶୟ ଅସାଧାରଣ କ୍ଷମତା, କୃତିତ୍ୱ, ଲିପିକୌଶଳ, ନିରପେକ୍ଷତା ଏବଂ ପ୍ରତିଭାର ପରିଚୟ ଦେଇ ଅଛନ୍ତି, ଏଥିରେ ସନ୍ଦେହର ଅବକାଶ ନାହିଁ । କାଠିନ୍ୟରେ କୋମଳତା, ଗାମ୍ଭୀର୍ଯ୍ୟରେ ତରଳତା ଏବଂ ପ୍ରକୃତ ବର୍ଣ୍ଣନରେ ରସିକତା ସଂମିଶ୍ରିତ ହୋଇ ଏହି ଗ୍ରନ୍ଥ ଅତ୍ୟନ୍ତ ଉପାଦେୟ ହୋଇଅଛି । ଶ୍ରାବଣର ଅନର୍ଗଳ ବର୍ଷଣ ଉତ୍ତାରୁ ନବ ଭାନୁକିରଣ ଯେପରି ମଧୁର, କଣ୍ଟକବେଷ୍ଟିତ ଗୋଲାପର ସୌରଭ ଯେଉଁପରି ମିଷ୍ଟ, ଏହି ପୁସ୍ତକ ଖଣ୍ଡିକ ସେହିପରି । ଏହି ଗ୍ରନ୍ଥର ଆଦର ହେବାକୁ ସର୍ବତୋଭାବରେ ବାଞ୍ଛନୀୟ । ମାଘ କବିଙ୍କର ନିମ୍ନୋକ୍ତି ରଚକଙ୍କଠାରେ ସମ୍ପୂର୍ଣ୍ଣ ସାର୍ଥକ:—

"ଶ୍ଲିଷ୍ଟ ନନ୍ଦ୍ୟ ଘଣଃ ସର୍ଗେ ଅର୍ଦ୍ଧାଶନ
ପ୍ରତିଭାର ପରି ଲଲାଟ ଲିଖନ ।"

କାଳୀତଳା
କଟକ
ତା ୧୯।୧୦।୩୫

ଶ୍ରୀ ଶଶିଭୂଷଣ ରାୟ

୩

ପଣ୍ଡିତ ଶ୍ରୀ ଭୁବନେଶ୍ୱର ମିଶ୍ରଙ୍କ କୃତ ଶାନ୍ତରସାତ୍ମକ 'ଉଦାସୀ' କାବ୍ୟ ପାଠ କରି ଅତିଶୟ ପ୍ରୀତ ହେଲି । ଲେଖକ ଏହି କାବ୍ୟ ଅତି ସରଳ ଭାଷାରେ ସର୍ବଜନାଦୃତ ବଙ୍ଗଳାଶ୍ରୀ ରାଗରେ ପ୍ରଣୟନ କରିଅଛନ୍ତି । ଆଧୁନିକ ରୁଚିର ଅନୁକୂଳ ହୋଇଥିବା ହେତୁରୁ ଏ କାବ୍ୟ ସର୍ବସାଧାରଣରେ ପାଠ୍ୟରୂପେ ଗୃହୀତ ହେବ । ଛନ୍ଦ-ବୈଚିତ୍ର୍ୟ ଓ ଶବ୍ଦାଳଙ୍କାରବହୁଳତା ଏହାର ପ୍ରଧାନ ବିଶେଷତ୍ୱ ।

ରଚନାଭଙ୍ଗୀ, ଶୋଭନ ପଦଯୋଜନାସାମର୍ଥ୍ୟ, ବସ୍ତୁସଂସ୍ଥାପନ-ପାଟବ, ଚରିତ୍ରଚିତ୍ରଣ କୌଶଳ ପ୍ରଭୃତି ଯଥାଯଥ ରୂପେ ଲକ୍ଷିତ । ଏହି କାବ୍ୟ ସର୍ବସାଧାରଣଙ୍କ ପାଠୋପଯୋଗୀ ହେବ, ଏହା ମୋର ବିଶ୍ୱାସ ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି
ତା ୨୧।୧୦।୩୫

୪

ପଣ୍ଡିତ ଭୁବନେଶ୍ୱର ମିଶ୍ରଙ୍କ ରଚିତ 'ଭବାନୀ' କାବ୍ୟଟିର ପାଣ୍ଡୁଲିପି ମୋଟାମୋଟି ପାଠ କରି ଆନନ୍ଦିତ ହେଲି । ଏ କାବ୍ୟରେ କବି ଉତ୍କଳୀୟ ରାଜକନ୍ୟାଙ୍କର ପ୍ରଗାଢ଼ ସ୍ୱଦେଶ ଏବଂ ସ୍ୱଧର୍ମ-ପ୍ରୀତି, ତଥା ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ପ୍ରତିହିଂସା-ବହ୍ନିର ଜ୍ୱାଳାମୟୀ ଶକ୍ତିକୁ ବେଶ୍ ସୁନ୍ଦର ଭାବରେ ପରିସ୍ଫୁଟ କରି ଅଛନ୍ତି । ରଚନାର ଶୈଳୀ କବିଙ୍କର ପ୍ରବୀଣତାର ପରିଚାୟକ । କାବ୍ୟର ଭାଷା ବେଶ୍ ସରଳ ଏବଂ ସୁବୋଧ ହୋଇଅଛି । ମୋର ବିଶ୍ୱାସ, ଏ କାବ୍ୟଟି ପ୍ରକାଶିତ ହେଲେ ଉତ୍କଳସାହିତ୍ୟର ଅଙ୍ଗସୌଷ୍ଠବ ଅବଶ୍ୟ ଯତ୍କିଞ୍ଚିତ୍ ବୃଦ୍ଧି କରିବ ।

ପୁସ୍ତକ ମୁଦ୍ରଣରେ ପଣ୍ଡିତ ମହାଶୟ ଉତ୍କଳର ସାହିତ୍ୟାନୁରାଗୀ କୌଣସି ଉଦାର ରାଜା ମହାରାଜାଙ୍କଠାରୁ ଉତ୍ସାହ ପାଇବାର ଦେଖିଲେ ବିଶେଷ ଆପ୍ୟାୟିତ ହେବି ।

କଟକ
ତା ୨୦।୧୦।୩୫

ଶ୍ରୀ ଲିଙ୍ଗରାଜ ମିଶ୍ର
ସଂପାଦକ—ସମାଜ

ଶ୍ରୀମାନ୍ ପଣ୍ଡିତ ଭୁବନେଶ୍ୱର ମିଶ୍ରଙ୍କ ପ୍ରଣୀତ ଶୃଙ୍ଗାରରସାତ୍ମକ 'ଭବାନୀ' କାବ୍ୟର ସମସ୍ତ ବିଷୟସୂଚୀ ଓ କବିତାର କିୟଦଂଶ ପାଠ କରି ମୁଁ ଅତ୍ୟନ୍ତ ପ୍ରୀତିଲାଭ କରିଅଛି । ଲେଖକ ଉତ୍କଳ-ସାହିତ୍ୟ କ୍ଷେତ୍ରରେ ସୁପରିଚିତ । କେତେଗୁଡ଼ିଏ ମୌଳିକ ପ୍ରବନ୍ଧ ଲେଖି ସେ କ୍ରମାନ୍ୱୟରେ ୪ ବର୍ଷ "ସାହିତ୍ୟ ସମାଜ"ରୁ ପୁରସ୍କାର ପ୍ରାପ୍ତ ହୋଇଅଛନ୍ତି ଏବଂ 'ପ୍ରତିଜ୍ଞା' ନାମରେ ଖଣ୍ଡିଏ ସୁରୁଚିପୂର୍ଣ୍ଣ 'ପ' ଅନୁପ୍ରାସ-ମୂଳକ ଆଧୁନିକ କାବ୍ୟ ଲେଖି ତାଙ୍କ ସାହିତ୍ୟିକ ଜୀବନର ଜ୍ୱଳନ୍ତ ନିଦର୍ଶନ ଆମ୍ଭମାନଙ୍କ ସାହିତ୍ୟ କ୍ଷେତ୍ରରେ ରଖି-ଅଛନ୍ତି । ତତ୍ପ୍ରଣୀତ ଏହି ଅଭିନବ କାବ୍ୟଖଣ୍ଡି ଐତିହାସିକ କଳ୍ପନାର ଗୋଟିଏ ମନୋହର ଚିତ୍ର । ଶବ୍ଦଯୋଜନା ଓ ଭାବ-ବୈଶିଷ୍ଟ୍ୟରେ ଏହାର ଅପୂର୍ବତ୍ୱ ଉତ୍କଳ କାବ୍ୟ ସାହିତ୍ୟରେ ଗୋଟିଏ ବିଶିଷ୍ଟ ସ୍ଥାନ ପାଇବ, ଏଥିରେ ସନ୍ଦେହ ନାହିଁ । ମୋର ଆଶା, ଏପରି ସାହିତ୍ୟସେବୀ ଯୁବକମାନେ ଉତ୍କଳର ବିଦ୍ୟୋତ୍ସାହୀ ବଦାନ୍ୟ ନରପତି ଓ ଧନିକମାନଙ୍କଠାରୁ ସମ୍ୟକ୍ ଉତ୍ସାହ ପାଇଲେ ଆମ୍ଭମାନଙ୍କର ଅପୂର୍ଣ୍ଣ ସାହିତ୍ୟ କ୍ରମେ ପୂର୍ଣ୍ଣତା ଆଡ଼କୁ ଅଗ୍ରସର ହେବ ।

କଟକ<br>ତା ୨୩।୧୦।୩୫ } ଶ୍ରୀ କୁଳମଣି ଦାଶ

# ସନ୍ଧାନ

ଦାଣ୍ଡରେ ଶୁଭିଲ୍      ସବାସ୍ତ ଡାକରା<br>
'ହୁଁମେରା ଖାଇରେ ହୁଁଉଁ',<br>
ଯେତେବେଳେ ନଣା      ଘୋର ଗରଜଇ<br>
ଶଙ୍ଖ ରବ ଶୁଭେ ଭୁଁଉଁ ।

ଦୁଲୁକିଲା କାନ୍ଥ,      ଦୁଲୁକେ କବାଟ,<br>
ଦୁଲୁକଇ ଘର ଦ୍ୱାର ;<br>
ବେକ ଶବଦର      ଧକ୍କା ବାଜବାରୁ<br>
କାନ କମ୍ପେ ବାରମ୍ବାର ।

ଗାଢ଼-ନିଦ୍ରାଦେବୀ      ସ୍ୱପ୍ନ ପଳାଇଲେ<br>
ରହିଲ୍ ଶେଯରେ ପଡ଼ି<br>
ଚମକିବ ବୋଲି      ପୁଅକୁ କୁଣ୍ଢାଇ<br>
ଶୁଣି ଶବ୍ଦ ଘଡ଼ଘଡ଼ ।

ହାତିଅନ୍ଧ ବାଟେ      ମଶାଲ ଆଲୁଅ<br>
ପଶିଲା ଶୋଇଲା ଘରେ,<br>
ଭାବିଲି, 'କା! ନୂଆ —      ବୋହୂ ଯାଉଅଛି<br>
ଏତେ ବଡ଼ ଆଡ଼ମ୍ବରେ !

ଯାହାର ଝିଅଟି ଅଧ ଘଣ୍ଟାରେ
ଗଲା ଆଜ ଶାଶୁଘର,
କେଉଁପରି ତାକୁ ବାପ ମାଆ ତାର
ଛାଡ଼ିଦେଲେ କରି ପର ।

'ଥିଲା ଅମଣିଆ ବାଲ୍ୟର ପ୍ରଶ୍ରୟେ
ପଖାଳିନେ ତା'ପ୍ରାଣକୁ,
ଏବେ ତା କାନ୍ଧରେ ସଂସାର-ଶୃଙ୍ଖଳ
ବନ୍ଧାହିବ ଦୃଢ଼ଭାବେ ।

ତା ଶାଶୁ ନଣନ୍ଦ ପାଖେ ପାଖେ ରହି
ଜଳଖାଉ ଥିବେ ଗତ,
କଣା ଯୋଗେ ଘୁଟେ ଘୁଟେ ମାରୁଥିବେ
ମଣ କରିବାକୁ ପତ ।

ସଂସାର-ଯନ୍ତ୍ରକୁ ବୋହି ବୋହି ତାର
କାନ୍ଧେ ବସିଯିବ କଣ୍ଡି,
ମାୟା-ଦୟା ଗଲେ ଘଷି ଘଷି ହୋଇ
ଠାଏ ଠାଏ ଯିବ ଛିଣ୍ଡି ।

ମାଇପି ଜନମ— ଠାରୁ ହୀନ ନାହିଁ
ସଂସାରରେ ଆଉ କିଛି,
ପର-ଘରେ ଖାଇ ପାଇଛି କରିବା
ମାଇପି ଜାତକ ଛି-ଛି ।'

ଏହୁପରୁ କେତେ ଦାଗ, ଜ୍ଞାତ ଦୁଃଖ
ମନେ ଘନ ଛନ୍ଦା କୋଳେ
ଆଶ୍ରୁ ନେବାକୁ ଦଗ୍ଧ-ଦାହିନୀ
ଆଲିଙ୍ଗିଲେ ସ୍ନେହ-ହସ୍ତେ ।

ରାତି ନ ପାହୁଣୁ ଦାଣ୍ଡ ଦୁଆରରେ
ଡକେଇ ଭିକ୍ଷାକ ଭ୍ରାତ
କହିଲି 'ରେ ଭାଇ ! କେତେ ଶୋଇଥିବୁ
ରାତି-ଶେଷପରେ ଯାକ ?

ଧଡ଼ପଡ଼ ହୋଇ ଉଠି ମୁଁ ପଡ଼ିଲି
ଡର ହୋଇଗଲା ଭାବ,
ମାସ ସେତେବେଳେ ନ ଥିଲେ ଆତୁକ,
କୁମ୍ଭାରୁଆ, କାକୁ ସବ !

ଦାଣ୍ଡ-ଦୁଆରକୁ ଫେରାଇ ଦେଖିଲି
ଦନୁଭାଇ ଆସି ଠିଆ
ହୋଇଥିଲା ତାର ଜଣ ବୁଢ଼ୀ ସଙ୍ଗେ
ହସ୍ତେ ଧରି ଅଛି ଛୁଆଁ ।

ସର୍ବ ମୁଖେ ଅଗ୍ନି ଢଳେ କରୁଛନ୍ତି
ମଧ୍ୟରେ ଅନ୍ତର ବଢ଼ି,
କାହା ମୁଖ ପାଖୁଁ ଡରପୋଡ଼ା ଅଛି
ପଡ଼ି ଥାଏ ଚଲେ ତୁଣ୍ଡ ।

ଅଧୂଆ-ମୁହଁରେ ନନ୍ଦ ବଲଠାରୁ
ଆଣି ଗୋଟେ ଲମ୍ବ ପିକା
ନଖଁରେ ଲଗାଇ ମୁହଁରେ ଧରଣ
କଷ୍ଟେ ଶୁଣେ ବଚନକା ।

"ବାଲୁଙ୍କା-ମାଆକୁ ସଙ୍ଗେ ନ ଆଣି ତୁ
ଏକୁଟିଆ ଆସୁ" ବୋଲି
ସେ ଭଗିଣୀ-ପତି ଦନ୍ତୁ ଥଟ୍ଟା କଲା
ମୁଖ-କୁମୁଦକୁ ଖୋଲି ।

ରହସ୍ୟ ଉତ୍ତରେ ଭାଷିଲ ବଣ୍ଟାଳ
"ଜାଣିଛୁଟିକ ସାମଲ
ସବାସ୍ଥି ଡାକରେ ଘଣ୍ଟେ ନଦ୍ରାଦେଖା
ହେଲେ ଯାତ୍ରା କଲବଲ ?

'ସୋରଷ ଫୁଲ ରେ କଣ୍ଡ ଗେଲ ରେ'
ଆପଟେ କହୁ ଏ ବାଟେ
ଯିବାବେଲେ ତୋର ନଦ ଭାଙ୍ଗିଥିବ
ଉଠିଥିବୁ ସେ କୁହାଟେ ।"

"ହଁ-ଅଁ, ମୁଁ ଜାଣିଛୁ" ଉତ୍ତର ସାମଲ
ପଗ୍ଗୁରଲା "ଗଲା କଏ
ସବାସ୍ଥିରେ ବସି ଗାଡ଼ି ଅଧଟାରେ ?
ଭାବୁଛୁ ମୁଁ ବୋହୂଟିଏ ।"

ଉତ୍ତରିଲ ଦୂତ, "ଅନୁମାନ ତୋର
ଏ ସ୍ଥଳରେ ନୁହେଁ ସତ
ହେଲା ଷଣ୍ଢନାଥ— ଭଞ୍ଜ-ସୁତା କାଲି
ଯବନର କରଗତ ।

ଗୋପନେ ସୈନିକ ଅଣାଇ ସାରଙ୍ଗ—
ଗଡ଼ ଧ୍ୱଂସି ବଙ୍ଗେଶ୍ୱର
ଭଞ୍ଜ ଗଲା-ହାର ରାଜନେମା ହର
ପଳାଇଗଲେ ସତ୍ୱର ।

ସୈନ୍ୟବୃନ୍ଦ ଗଲେ ଉତ୍ତରଣା ମୁଖେ
ସବାଘରେ ନେମା ଭରି
ଥୋକାଏ ବାହକ ଆଣିଲେ ଏ ପଥେ
ହୁଁ ହେମ୍ବା ଶବଦ କରି ।

ସାରଙ୍ଗେଶ ସେନା ଅଶ୍ୱପୃଷ୍ଠେ ଧାଇଁ
ନନ୍ଦିନୀ ଉଦ୍ଧାର ଆଶେ
କରୁଛନ୍ତି ରଣ ଅଦମ୍ୟ ସାହସେ
ବରୁପା ତଟିନୀ ପାଶେ ।

ମାନ ରାଜନେମା ଗଲଣି ଅପରୁ
ପଥେ ପଙ୍କ ଶଙ୍କ କରେ
ଏହି ଦୁଃସମ୍ବାଦ କହିବାକୁ ତୋତେ
ଡାକୁଥିଲି ଖରତରେ ।

ଶେଷେ ଏ ସନ୍ଦେଶ ବସ୍ତନାଥ ଜଣେ
ଜଣାଇଲେ ଏହିକ୍ଷଣି
ସମର ନ କରି ଉପାୟ ଉଚିତେ
ତାଡ଼ିବାକୁ ଜେମାମଣି ।”

ଶୁଣି ସେ ଯାମଲ ହୋଇଲା ଚାଣ୍ଟକା
ବୋଷିଲା “ଶୂର ଯବନ
କି କଲୁ ଏ ରାଜ୍ୟେ ପଶି, ଲୁଟି ସର୍ବ
ହରିଲୁ କନ୍ୟା-ରତନ ।

ତାଙ୍କ ବା କ ଦୋଷ, ତାଙ୍କ ତ ଆଣିଲା
ଜୟଚନ୍ଦ୍ର କୁଳାଙ୍ଗାର
ଘର ଜଳ ଘରେ ନ ଶୁଣି ଅପର
କରେ ଦେଲା ଅଧିକାର ।

ଅନ୍ତର ବିବାଦ ଯୋଗେ ସିନା ଆଜ
ବଦେଶୀ ମୁସଲମାନ
ଦାସତ୍ୱ-ଶୃଙ୍ଖଳେ ବାନ୍ଧିଲା ହିନ୍ଦୁଙ୍କୁ
ପଦେ ଦଳ ହିନ୍ଦୁସ୍ଥାନ ।

ଯବନ ଜୀବନ ଅନ୍ୟ ଉପାଦାନେ
ଗଠିତ ଯେଣୁ ସକଳ
ଅସମ୍ଭବ କଥା ସମ୍ଭବଇ ତାଙ୍କ
ଜୀବନରେ ଅବଙ୍ଗାଳା ।

ସ୍ୱର୍ଣ୍ଣ କାନ୍ତି ଶୋଷା ବାପ ପଦ୍ମଧାର
ଅଝର୍ଗ ହ୍ରୁଣ୍ଡୁ ଭଣ୍ଡାର
ଓଇଟ୍ଟାଇ ଭାଣ୍ଡା ପିନ୍ଧଇ ସ୍ୱଧର୍ମୀ
ଲୁଙ୍ଗି ପାଇଜାମାମାନ ।

ଆର୍ଯ୍ୟ ସନ୍ତାନେ ଅନ୍ନ ପରର ପେଟରେ,
ଭ୍ରଷ୍ଟାଙ୍କ ପୃଷ୍ଠେ ସକଳ,
ପ୍ରସ୍ରା କରି ଜଳ ଲେଉଟନ୍ତି ହିନ୍ଦୁଏ,
ମାଟି ସେ କରେ ଗ୍ରହଣ ।

ସେ ସବନ ଆଜ୍ଞା ଘଟାଇଲା ଆମ୍ଭ
ନୃପ ଭଟ୍ଟଶ୍ୟ ଏ ଦୁର୍ଦ୍ଦଶା
ମାଇଲା ଏ ଦେଶ— ବାସୀଙ୍କି ଗୃହଣ୍ଡା
ଆଘାତେ ଶସ୍ତ୍ରର ମଣା ।

ଆଜ ଷଣ୍ଢନାଥ— ସୁତାଙ୍କୁ ହରିଲ
କାଲକ ଭୈରବ ଆନେ,
ଜଳଜଳ କରି ଗୃହ ଥିବା ଅମ୍ଭେ
ଶୁଣି ତାଙ୍କ କୀନ କାନେ ।

ସହିଲୁଣି ଆମ୍ଭ ଧର୍ମଶୀଳ, ଏଟବ
ଅଧର୍ମୀର ପଦ ତଳେ
ବାଧ ହୋଇ ଶତ ପ୍ରଣାମ କରିବା
ନୋହିଲେ ଖଣ୍ଡକ ବଳେ ।

ହେବ ହୃଦ-ରାଜ୍ୟେ     ଅଧର୍ମ ରାଜନ,
ଧର୍ମ-ଦ୍ରୋହୀ ପରିଷଦ
କାମ କ୍ରୋଧ ଆଦ     ଘୋର ରିପୁ ସଦା
ଘଟାଉଥିବେ ବିପଦ ।

ରକ୍ଷା କାହିଁ ଆଜି     ଅଶକ୍ତ ହୋଇବା
ଆର୍ଯ୍ୟ ରାଜେଶ୍ୱର ସ୍ଥାନେ
ହୋଇବେ ରକ୍ଷିତା     ଆର୍ଯ୍ୟବାଳାଗଣ
ଯବନ-ଭବନେ ଧନେ ।"

ନିଶ୍ୱାସ ପକାଇ     ବୋଇଲୁ ଦନାଇ
"ଛାଡ଼ ଭାଷା ଭୂତ କଥା!
ଉପାୟ ରଚନା     କର ହରିବାକୁ
ଉପସ୍ଥିତ ଗୁରୁ ବ୍ୟଥା ।"

'ଚାଲ ଯିବା ବେଗେ'     ଭାଷିଣ ସାମଲ
ପଶି ଗୃହ ଅଭ୍ୟନ୍ତରେ,
ମୁହଁ ଧୋଇ, କାଖେ     ଲୁଗା ଖଣ୍ଡେ ଯାକ
ବାହାରିଲା ତରତରେ ।

ବାଡ଼ ଖଣ୍ଡେ ଦାଣ୍ଡ—     ଘରକୁ ଦଗଣ୍ଡି
ଆଣି ଧରି ବାମ ହାତେ
ଡାହାଣ ସାହାଯ୍ୟେ     ପିକା ଖାଇ, ଧୂଆଁ
ଛାଡ଼ୁଥିଲା ମୃଦୁ ବାତେ ।

ତତ୍ପର ହୋଇ ଚଳିଲେ ସକଳେ
ଘୁରୁଘା ବିରୂପା ତଟେ,
ପ୍ରବେଶିଲେ ଯହିଁ ବିଶ୍ୱନାଥ ଭଞ୍ଜ
ସେନାବାସ ପରକଟେ ।

ଲାଗିଥିଲା ତହିଁ ତୁମୁଳ ସଂଗ୍ରାମ
ସ୍ରୋତସ୍ୱିନୀ ବେଳା ତୀରେ,
ବନ୍ଧୁକ ଶବଦେ କମ୍ପୁଛି ମେଦିନୀ
ଢାଙ୍କିଛି ଧୂମ ମିହିରେ ।

ଧ୍ୱଜା ଛାଡ଼ି ଦଳ ସଦଳେ ପ୍ରବେଶ
ହୋଇ ସାରଙ୍ଗେଶ ପାଶେ,
ପ୍ରଣମି ଚରଣ ତଳେ, ଭକ୍ତିଭରେ
ବାଷ୍ପରୁଦ୍ଧ-ସ୍ୱରେ ଭାଷେ—

"ମଣିମା ! କି ବାର୍ତ୍ତା ଦେଇ ମୁଁ ସମ୍ମୁଖରେ
ପକାଇବି ଶୋକ-ସ୍ରୋତେ,
ମର୍ମ-ବିଦାରକ ଦୁଃସମ୍ବାଦ ଶୁଣି
ନ କରିବେ ଦୋଷୀ ମୋତେ ।

ବୃଥା ହେଲା ପ୍ରଭୁ ସକଳ ଉଦ୍ୟମ
ଅଗସ୍ତ ସଙ୍ଗତେ ରଣ
ଯା ଉଦ୍ଧାର ଲାଗି ଲାଗିଛି ସମର
ନାହିଁ ସେ କନ୍ୟାରତନ ।

ନେଇଗଲି ତାହାକୁ                    ସବାସ୍ତରେ ଘର
          ସ୍ୱର୍ଗେ ଗନ୍ଧର୍ବେ ଅଥବ
ଦେବବଧୂ ସାଙ୍ଗେ                    ସନ୍ଦେହ ଜିଣାଇ
          ଶଙ୍ଖ ରବେ ଜାବା ଘର ।

କାନରେ ଶୁଣିଲି                    ସବାସ୍ତ ଶବଦ
          ଧଡ଼ପଡ଼ ହୋଇ ଉଠି,
ଦାଣ୍ଡ-ଦୁଆରକୁ                    ଦେଖିବାକୁ ଗଲି
          ପାଉଛୁ କିଏ କେଉଁଠି ।

ଦେଖିଲି ଚମକ                    ଚନ୍ଦ୍ରାଲୋକି ପର
          ମଶାଲ-ଆଲୋକେ ଦାଣ୍ଡେ
ଗଣି ହେଉଛନ୍ତ                    ରେଣୁ କଣାଗଣ
          ଜଣା ପିପୀଲିକା ବୃନ୍ଦେ ।

ବସ୍ତ୍ର ଅଳଙ୍କାର—                    ପରିହିତ କେତେ—
          ଜଣ ହନୁ ବେଶଧାରୀ
ଆନନ୍ଦ-ଆମୋଦେ                    ଚାଲିଛନ୍ତି ଖଟରେ
          ମଧ୍ୟରେ ରଖି ସବାସ୍ତ ।

ଉତ୍କଳ-ଭାଷାରେ                    କଥାବାର୍ତ୍ତା କରି
          ମୁଣ୍ଡରେ ବାନ୍ଧି ପଗଡ଼ି,
ଜଣାଇ ଦେବାକୁ                    ଉତ୍କଳୀୟ ବୋଲି
          ସେହି ସବେ ଗଲେ ଜଡ଼ି ।

ନ ପଦ୍ମର କଣ୍ଠ          ଘାଟରେ ଦେଖିଲି
ସବାଙ୍କର ସାଜସଜ୍ଜା,
ଖଣ୍ଡା ଅଛି ତହିଁ          ରୂପାଣ୍ଡିଆଙ୍କୁଣୀରେ
ସୁନା ଜଣ୍ଟ ମନଲୋଭା ।

ଢେଙ୍କା ଢେଙ୍କା ଲୋକେ          ଠେଙ୍ଗା ଧରି ହାତରେ
ସବାଣ୍ଟ କରି ବନ୍ଧନ,
ହୁଁ ହୋଁର ଶବଦେ          ମେଦନୀ କମ୍ପାଇ
କରନ୍ତି ଦ୍ରୁତେ ଗମନ ।

ସବାଙ୍କ ମଧ୍ୟରୁ          କାହିଁ କ୍ଷୀଣ ସ୍ୱର
କ୍ଷଣେ କ୍ଷଣେ କର୍ଣ୍ଣେ ବାଜେ,
ନବ-ବଧୂ-ଯାହା—          ଲକ୍ଷଣ ଜଣାଇ
ସନ୍ଦେହକୁ ଦେଲା ମାଜି ।

ସ୍ଥିର କଲି ମୁହଁ,          ବଡ ଲୋକଙ୍କ କେଙ୍କ
ନନ୍ଦିନୀକି ଶାଶୁଘର
ପଠାଉଛନ୍ତି ଦୁଃଖ—          ସାଗରେ ଭସାଇ,
ପ୍ରମାଣ କ୍ରନ୍ଦନ ସ୍ୱର ।

ଶୁଣିଗଲେ ପଦେ          ପୁରୁବ ଅନ୍ଧାର
ମାଡ଼ିଗଲା ହୃଦଅଙ୍ଗେ,
ମୁଁ ଦେଖିଲି କିଛି          ଗଛ ଲତା ଆଦି
ପରିଦ୍ୱାର କାନ୍ଦ ବାଣି ।

ସେତକ ବେଳକୁ ଓଳତଳେ ଆସି
ଠିଆ ହୋଇ କିଏ ଜଣେ,
'ଶୁଣ' ବୋଲି ମତେ ଅଟକାଇ ଧୀରେ
କହିଲା ମୋର ଶ୍ରବଣେ—

'ଏହି ଯେ ସବାସ୍ତି ଗଲ ଏହିକ୍ଷଣି,
ଚନ୍ଦ୍ର ବିଶ୍ୱନାଥ-ସୁତା
ବୁହା ହୋଇ ଗଲା ବଙ୍ଗେଶ ଆଦେଶେ
ସୈନ୍ୟେ ହୋଇ ଅପହୃତା ।'

ବଜ୍ର ପଡ଼ିଗଲା ବୋଲି ମୋ ମୁଣ୍ଡରେ
ମଣିଲି ତା ବାଣୀ ଶୁଣି,
କେଉଁ କ୍ଲେଶ ଅବା ଲଭୁ ନ ଥିବ ସେ
ସବାସ୍ତି-ଲୁବ୍ଧା ତରୁଣୀ ।

ମୁଣ୍ଡେ ହାତ ମାରି ବସି ମୁଁ ପଡ଼ିଲି
ଦାରୁଣ ବାଣୀ ଶ୍ରବଣେ,
ଜଡ଼ ପାଲଟିଲ ଆପାଦମସ୍ତକ,
ଚେତା ହରାଇଲି କ୍ଷଣେ ।

ଧୈର୍ଯ୍ୟବହଲ ପୁଣି ସଂଜ୍ଞା ଲଭ କରି
ପରିଚୟ ନେବି ବୋଲି
ନିବିଡ଼ ଅନ୍ଧାରେ ନିରେଖି ଚାହିଁଲି
ବାଡ଼ିବନ୍ଧେ ଆଖି ଖୋଲି ।

ଦୁର୍ଭାଗ୍ୟ ବଶରୁ ଦୁଃସନ୍ଦେଶ-ବନ୍ଧ
ହୋଇଥିଲା ଅନ୍ତର୍ହିତ;
ନ ଲଭିଣ ତେଣୁ ପରିଚୟ ତାର
ହେଲି ମୁହିଁ ଅଚମ୍ବିତ ।

ବାବୁଲଙ୍କ ପରି କେତେ ମୁଁ ଡାକିଲି
ନ ଦେଲେ କେହି ଉତ୍ତର,
ବଗ୍‌ଣ ହୃଦୟେ ରହି କନ୍ଦି କାଳ
ଆସିଲି ଏତେଣ ସତ୍ୱର ।

ଜଣାଇଲି ପ୍ରଭୁ ! ଶ୍ରୀମୁଖେ ସନ୍ଦେଶ,
ରଚନ୍ତୁ ବେଗେ ଉପାୟ
ତୁର ଅରି-କରୁ ତାରିବାକୁ ଜେମା
ସାରଙ୍କେଣ ନରପ୍ରାୟ !"

## ଉଦ୍ଧାର

ହାହ୍ଲା-ତାନ୍-ଯୋର୍— ନଦନ୍ତ-କାନନେ
ମରହଟ୍ଟା ରଘୁସ୍ବାର
ରଖିଥିଲେ ଆଣି ଅଗଣିତ ସେନା
ଗୋପନେ ରଚି ଶିବିର ।

କୁଳୀନ ବ୍ରାହ୍ମଣ ବଂଶେ କଳଙ୍କ ଲଭି
ଯବନ ଧ୍ୱଂସ ସାଧନେ
ସ୍ୱାଧର୍ମ ପାଳି— ଥିଲେ ରଘୁସ୍ବାର
ସ୍ୱଜାତି ଦେଶ ବନ୍ଧୁଜନେ ।

ପାଙ୍ଖାସ୍ତୁ ଜାତି ସୈନକେ ତାଙ୍କର
ଥିଲେ ସଦା ସହଚର,
ସଙ୍ଗଠଧ ଅସ୍ତ୍ର ଶସ୍ତ୍ର ଚାଳନାରେ
ଅତ୍ୟନ୍ତ ଯେ ଧୂରନ୍ଧର ।

ନିଜେ ଗୁରୁ, ନିଜେ ସେନାପତି ଥାଇ,
ଦୁର୍ଦ୍ଧାନ୍ତ ସୈନିକଗଣେ
ମୁହୂର୍ତ୍ତି ମଧ୍ୟରେ ଏକତ୍ର କରାଇ,
ଅରଣ୍ୟେ ଲୁଣ୍ଠନ୍ତ କ୍ଷଣେ ।

ନାନା ଦେଶ ଲୁଟି ପର୍ବତ କୋଷ୍ଠରେ
ଭରିଥିଲେ ଯେତେ ଧନ,
ସମ୍ ନୁହେଁ ତାର କୁବେର ଭଣ୍ଡାର,
ସାକ୍ଷାତେ ଲକ୍ଷ୍ମୀ-ଭବନ ।

କେତେ ଯେ ପର୍ବତ ଥିଲା ରତ୍ନ-ଭରା
କଳନା କରିବ କିଏ ?
କେଜାଣି ବା କଳ୍କି ପାଇଲେ ପାଇନ୍ତ
ଏକଥ ସର୍ବ କହଏ ।

ସପ୍ତ ରତ୍ନ ଭରା ଅଗସ୍ତି ଉଦରେ
ରଘୁବୀର ବାହୁ ତଳେ
ଲୁଚି ରହିଲେ କି ରକ୍ଷାକର୍ତ୍ତା ଯାର
ସ୍ୱାଧର୍ମ୍ମୀ ଭୂମଣ୍ଡଳେ ?

ହୀରକ ଆଲୋକେ ଭୂଧର କନ୍ଦର
ଦିଶଇ ଦିବସ ପରି,
ଅପର ସପତ ରତନର ତେଜ
ନେଇଥାଏ ନଭେ ହରି ।

କେତେ ଗୁପ୍ତଚର ଥିଲେ ସେ ଦ୍ୱିଜର
ଗଣନା କରିବ କିଏ ?
ପ୍ରତି ମୁହୂର୍ତ୍ତରେ ଭାରତବର୍ଷର
ରାଜନୀତି ତତ୍ତ୍ୱ ନିଏ ।

କେଉଁଠି କେ ଜାତ ହେଲ ପରଧର୍ମୀ,
କିଏ କାହିଁ ରାଜଦ୍ରୋହୀ,
ହିନ୍ଦୁ ମନ ବାଞ୍ଛା କରେ କେ, କେ ଅବା
ହିନ୍ଦୁ ରକ୍ତ ନିଏ ବୋହି ।

ବ୍ରହ୍ମକଣ୍ଟକ କେ, ସତୀତ୍ୱ-କଣ୍ଟକ
ରମଣୀର କିଏ କାହିଁ,
ପ୍ରତିକ୍ଷଣେ ରହୁ— ଯାର ଜାଣୁଥିଲ,
ଅବସର କିଛି ନାହିଁ ।

ଦିଲ୍ଲୀ ସମ୍ରାଟଙ୍କ ମଙ୍ଗଳାମଙ୍ଗଳ,
ବଙ୍ଗ ନବାବଙ୍କ ଢଙ୍ଗ,
ରାଣା ରାଜସିଂହ— ସମର-କୌଶଳ
ମରହଟ୍ଟା ରଣ-ରଙ୍ଗ;

ଭରତପୁରରେ ଜାଠ ଅଭ୍ୟୁଦୟ,
ଶିଖ ଜାତି ଯୁଦ୍ଧ ଶିକ୍ଷା,
ଜାଣୁଥିଲ ଯାର ବ୍ରାହ୍ମଣ୍ୟେ ଯେଉଁ
ଧରିଥିଲେ ନବ ଦୀକ୍ଷା ।

ଉତ୍କଳ-ସମ୍ରାଟ— ବୃହତ୍-ସାମ୍ରାଜ୍ୟ
ଶତ କଟକରେ ବନ୍ଧା,
ଯାହାକୁ ଗୋଚର ଭାଙ୍ଗିଥିଲ କିଏ
ନୀଳାଚଳେଶ୍ୱର ଅଣ୍ଟା ।

ଆତ୍ମରକ୍ଷା ଲାଗି କେତେ ଦୁର୍ଗ ଗଢ଼ି
ରଚିଥିଲା କେଉଁ ସ୍ଥଳେ
ଉତ୍କଳ-ଶରତେ, ଖାରବେଳ ନୃପତି,
ସକଳ ବଳ ସେ କଳେ ।

ଥାଉ ଆନ କଥା ଜନମ ମରଣ
ଗଣଇ ସେ ବାରମ୍ବାର
କେଉଁ ସାମ୍ରାଜ୍ୟ କେତେ ପ୍ରତ୍ୟେକ ସମ୍ରାଟେ
ଗଣିପାରେ ବୁଦ୍ଧିଧାର !

ବେଗଶାଳୀ ଅଶ୍ୱ ପାଳିଥିଲା ଯେତେ
ସକଳେ କୌଶଳୀ ରଣେ,
ଗଜ ବଣେ ଜଣି— ବାରୁ ବାଜିଗଣ
ବଢ଼ୁଲ ବଳତ ମଣେ ।

ରଣତପ୍ତ ଯେତେ ଥିଲା ବ୍ରାହ୍ମଣଙ୍କ,
ସରବେ ବ୍ରାହ୍ମଣୀ ଜଳେ
ବୁଡ଼ ରହୁଥାନ୍ତି, ଆବଶ୍ୟକ ବେଳେ
ଭାସନ୍ତି, ଖେଳନ୍ତି ସ୍ଥଳେ ।

ମହୋଦଧି ଉପ— କୂଳ କ୍ରୀଡ଼ା ସ୍ଥଳ
ବଙ୍ଗ ଆକ୍ରମଣ ପଥ,
ପୂରୁବ-ବାହିନୀ ଚଳିଣ ସକଳେ
ବାହୁଥିଲେ ଜଳ-ରଥ ।

ଧନରତ୍ନ ପୋତ ବଙ୍ଗୋପସାଗରେ

ଥିବା ସ୍ରୋତସ୍ୱତୀ ବକ୍ଷେ

ଚଳନ୍ତି ଯେତେକ, ରଘୁବୀର ତସ୍ୱ

କ୍ଷଣକେ ସରବେ ଭକ୍ଷେ ।

ସଙ୍ଗ ଦ୍ରବ୍ୟ ନେଇ ବୀର ପଦ ତଳେ

ଠୁଳ କରି ପୋତପାଳେ

ବାଜ୍ୟ ଜୁର କରି ଯାଆନ୍ତି, କେବେ ବା

ସମୁଦ୍ରେ ଜାହାଜମାନେ ।

ମୂର୍ତ୍ତିକା-ଶଙ୍କର ପୂଜେ ରଘୁବୀର,

ହର-ବରେ ବୀରବର,

'ବମ୍ ହର ହର' ଗର୍ଜ୍ଜିଲେ ତ୍ରିବାର

କମ୍ପଇ ସେ ଧରାଧର ।

ତୂର୍ଯ୍ୟ ଧରି ଯେବେ ଡାକଇ ଶଙ୍କରେ

ଧରଣୀ ଥରଇ ଡରେ,

ପ୍ରଚଣ୍ଡ-ଛଳେ ନିଜ ସୈନ୍ୟଦଳ

ଡାକଇ ଶିବେ ସେ ସ୍ୱରେ ।

ସ୍ୱର୍ଣ୍ଣ ଧ୍ୱଜାବଳି ତ୍ରିଶୂଳେ ଲାଞ୍ଛିତ

ଅରୁଣ କିରଣ ରଙ୍ଗେ,

ଭସ୍ମ ତ୍ରିପୁଣ୍ଡ୍ରକେ ସୈନ୍ୟକେ ଶୋଭିତ

ବିଭୂତି-ଧୂସର ଅଙ୍ଗେ ।

ମରହଟ୍ଟା ବୀର          କଟାକ୍ଷ-ଦର୍ଶନେ
ଶିବ ସମ କ୍ରୋଧାନଳେ
ଜାଳିପାରେ କ୍ଷଣେ          ସପତ ବ୍ରହ୍ମାଣ୍ଡ,
ଆପେ ଅଗ୍ନି ସ୍ଥାୟ ଜ୍ୱଳେ ।

ନିଜେ ବିଲୋଚନ          ତୃତୀୟ ନୟନ
ଭକତ କୋପକୁ ଡର
ବର ଛଳେ ଦେଇ          ଥିଲେ ବୋଲି କି ସେ
ପାରେ ସର୍ବ ଭସ୍ମ କରି ?

ଏକେ ଦ୍ୱିଜ, ଦୁଜେ          ଶିବଭକ୍ତ, ତହୁଁ
ମିଶିଛି କ୍ଷତ୍ରିୟ ଧର୍ମ,
କି ହେତୁ ବା ତାର          ତେଜ ନ ବଢ଼ିବ,
ସାଧିର ବିବିଧ କର୍ମ ।

ସର୍ବଜ୍ଞ ପରମ          ଭୂତ ଭବିଷ୍ୟତ
ବର୍ତ୍ତମାନ ଯାହା ଘଟେ,
କହିପାରେ ବୋଲି          ଜଣାଯାଏ ବୀର
ପୂର୍ବରୁ ସକଳ ଘଟେ ।

କାହିଁ ସେ ସାରଙ୍ଗ—          ଗଡ଼ ଧ୍ୱଂସ ଗାଥା
କାହିଁ ଶଶିକଳା ସ୍ୱେର,
କାହିଁ ବରୁପାର          ରକତ ସଲିଳ,
(କାହିଁ) ବିମୁକ୍ତ-କେଶା କିଶୋରୀ ।

ହୁଟିଆ ସାମଲ ଗଡ଼ଜଠା କଥା,
ଦନେଇ ବଣ୍ଟାଳ ଡାକ,
ଠିକେ ଠିକେ କହ— ଦେବ ରଘୁବୀର,
ଅଟେ ସେ ସ୍ୱପାର-ଡାକ ।

ଦ୍ୱିଜକନ୍ୟା ଉମା ଜେମା ରେଶ୍ମ ଦନ୍ତୁଁ
ମୁକ୍ତକେଶୀ ନାମ ବନ୍ଧ,
କପର ଭାବରେ ଧସରେ ବନ୍ଧରେ
ରଘୁବୀର ପାରେ କହ ।

ଆଜ ତାର ହୃଦ— କନ୍ଦୁକକୁ ଧର
ଶୁଣିକଲା କ୍ଷୀଣ ସ୍ୱର
କେତେ ଭାବ-ରଙ୍ଗେ ଖେଳାଉଛୁ, ତାହା
ବୀରକୁ ସିନା ଗୋଚର ।

ତଥାପି କଳ୍ପନା— ଶିଖରେ ଆରୋହ
ଯାଇ ରଘୁବୀର ପାଶେ
ଯେତେକ ବୃତ୍ତାନ୍ତ ଦେଖି ଆସିଥିଲୁ
ଫୁଟାଇଲି କାବ୍ୟାକାଶେ ।

ଅଟଳ ପ୍ରତିଜ୍ଞା ଆଜ ସେ ଦ୍ୱିଜର
'ଉଷାରବ ରାଜଜେମା,
ଶିକ୍ଷା ଦେବ ରଖି ଆପଣା ଭବନେ,
କରାଇବ ବଣ୍ଟପ୍ରେମ ।'

ରୁଦ୍ର ଉପାସନା ସାରି ଦସ୍ୟୁବର
ରଣବେଶ କରେ ଧରି
ହର ହର ସ୍ବରେ ବୀରବୃନ୍ଦ-ହୃଦେ
ବୀରରସ ଦଏ ଭରି ।

ସେତେବେଳେ ନିଶା ପ୍ରଥମ ପ୍ରହର
ଆଣ୍ଡା ନେଇ କାଳ କୋଳେ,
ପଠାଇଛୁ ସଖା— ବିଶ୍ରାମ-ଧାମକୁ
ସଂସାରକୁ ସ୍ନେହକୋଳେ ।

କପିଳାସ ଶୃଙ୍ଗ ଉତ୍ତୁଙ୍ଗ ଶିଖରେ
ଆଜ୍ଞା ଦଏ ବୀରଗଣେ,
"ଉଠ ଏହୁକ୍ଷଣି ବ୍ରାହ୍ମଣୀ ତଟରେ
ନାଶ ତାର ପ୍ରାଣପଣେ ।

ଯବନେ ଧରିଣ ଜନ-ରମଣୀକି
ଆଣିବା ଏକ୍ଷଣି ସର୍ବେ
ଦେଖିବା କପରି ସଖା ହରେ ହୁର
ଗଡ଼ ଭାଙ୍ଗି ମଣ୍ଡ ଗର୍ବେ ।"

ସପ୍ତ-ଅର୍ଦ୍ଧ-ଶତ ଅଶ୍ବାରୂଢ଼ ଯୋଦ୍ଧା
ସଙ୍ଗେ ଧରି ବୀରବର
ଛନେ ବାଜପୃଷ୍ଠେ ଚଢ଼ି ଧାଏଁ ଦ୍ରୁତ
ତାରିବାକୁ ସମାବର ।

ବିଦ୍ୟୁଦ୍ବେଗେ ସର୍ବେ ବ୍ରାହ୍ମଣୀର ପୁତ୍ର
ରଣରକ୍ତେ ଗଢ଼ା ତୁମେ
ପ୍ରବେଶି ଲୁଟିଲେ ନିବିଡ଼ ଅରଣ୍ୟେ
ଲୁଚାଇ ଶସ୍ତ୍ର ଦ୍ରୁମେ ।

ଆଷାଢ଼ୀ ନିଶା ଝିଲ୍ଲୀ ନିସ୍ୱନରେ
ଡାକ କନ୍ଦେ ଆର୍ତ୍ତିନାଦେ,
“ଦେଲ ଏତେ ଦୁଃଖ ସତୀ ପ୍ରତି ପ୍ରଭୁ,
ବଞ୍ଚିବ କି ଆଉ ପ୍ରାଣେ ?”

ଏକାଳେ ଶୁଭିଲା ପଦ ଖଡ଼ ଖଡ଼
ଅଳ୍ପ ଦୂରେ ବାରମ୍ବାର,
ଚମକିଲେ ସର୍ବ ସୈନିକେ ସପ୍ରଭ
ଚଳାଇଲେ ଶିର-ଠାର ।

ଉଡ଼ିଗଲା ପର ଯାଇ ଘେରିଗଲେ
ସଂବାଦ-ବାହକ ପାଶେ,
ଚଣ୍ଡେ ଟାଣି ଧରି ବାନ୍ଧିଲେ ଶୃଙ୍ଖଳେ
ଗୁରୁଙ୍କ ଶିକ୍ଷା ବଧିରେ ।

ଜଣେ ସୁଦ୍ଧା କେହ୍ନ, ବଞ୍ଚିତ ନ ହେଲେ
କଠୋର ଲୌହ ଶୃଙ୍ଖଳୁଁ,
ବାହକେ ହିଁ ବନ୍ଧା ହେଲେ ବଧିରତମେ
ନିଜକୃତ କର୍ମଫଳୁଁ ।

ବାନ୍ଧଦେଇ ତୁଣ୍ଡୀ ସକଳ ମୁଖରେ
ପକାଇ ଘୋଟକ ପରେ,
ତୁରଗ ସାହାଯ୍ୟେ ସବାରଙ୍କ ଧଇ
କୋଟରେ ଗମିଲେ ଖରେ ।

କାରାଧ୍ୟକ୍ଷେ ଡାକ ସମର୍ପି ବନ୍ଦୀଙ୍କି,
ସବାଙ୍କ ଫେଣ୍ଡ ବଚନେ
କେଲେ ଚନ୍ଦ୍ରସାର ନିଜ ଭବନକୁ
ଦେଖି ମଣି ସଯତନେ ।

କିଏ ଜାଣିଥିଲା ଯବନ ଅଦୃଷ୍ଟେ
ଘଟିବ ଏ ନଷ୍ଟନଷ୍ଟା,
ହୋଇବ ଉଦ୍ଧତ ପୁଣି ଭାଗ୍ୟାକାଶେ
କି ରହସ୍ୟ ଘନଘଟା ।

# ବିଷାଦ

ଚଣ୍ଡନାଥ ଭଞ୍ଜ ହୃଦୟେ ପୂରିଛି
ଅଦ୍ଭୁତ ସାହସ ଆଜ,
ଉଠାଇବ ବୋଲି ଯବନ ରାଜତ୍ୱ
ରଣେ ଥାଟ ଅଛି ସାଜ ।

ଟାଣିବ ଅସ୍ତ୍ର, ବସିବ ବଙ୍ଗଳା
ରାଜସିଂହାସନ ପରେ
ଛୁଟାଇବ ଜଜ କନ୍ୟାକୁ ରାଜନ,
ରତ ବେଣ ସାଧନରେ ।

ମୂଳ ଉତ୍ପାଟନ କରିବ ଯବନ—
ରାଜତ୍ୱର ବୋଲି ଶିର
ବର୍ଷିଲେ ଜଜର ଥାଟ ହୃଦୟରେ
କ୍ଷତ୍ରିୟ-ଉଚିତ ଗୀର—
"ଆର୍ଯ୍ୟରକ୍ତ ଯେବେ ବହେ ଧମନୀରେ
ଆର୍ଯ୍ୟରକ୍ତେ ଯେବେ ଜାତ ,
ଶର-ପଦ-ଦଳ— ସୈନ୍ୟ-ଗଣ, କର
ମୋ ବାଣୀରେ କର୍ଣ୍ଣପାତ ।

କ୍ଷତ୍ରିୟ ଔରସେ ଜନ୍ମିଛ ହେ ଯେବେ
ଅଟଳ ପ୍ରତିଜ୍ଞା ଶିରେ
ଆରୋହଣ କରି, କରବାଳ-କରେ
କାଳ ସମ ନାଶ ଯାରେ ।

ରଣେ ପୃଷ୍ଠଭଙ୍ଗ ଦେଇ ହେ କ୍ଷତ୍ରିୟେ
କପଟ ବଞ୍ଚିଛ ପ୍ରାଣ,
ରଣବଳ ଶୂନ୍ୟ କ୍ଷତ୍ରିୟ ସନ୍ତାନ
ପାଏ କି ହେ ପରିତ୍ରାଣ ?

ପର ହାତେ ଦେଇ ନିଜ ରମଣୀଙ୍କି
ବଞ୍ଚିଛ ଆଜ ଜୀବନ,
କାହୁଁ ନ ଥିବେ କି ଦେଖି ଅପଯଶ
ପୂର୍ବ ବୀର ପ୍ରେତଗଣ ?

ଗଙ୍ଗା ଗୋଦାବରୀ ଜିଣିଥିଲ ଯେଉଁ
ବୀର ବଳେ ଗଜପତି,
ସେହି ବଂଶେ ଜନ୍ମି ଆଜ ହେ କ୍ଷତ୍ରିୟେ
ଶତ୍ରୁ କରେ ଦେଲ ସତୀ !

ଦଶ ଅଶ୍ୱମେଧ— ଯଜ୍ଞ ସାଧେ ଯେଉଁ
ଯୋଦ୍ଧା ବଳେ ଅଧୀଶ୍ୱର,
ସେହି ବଂଶେ ଜନ୍ମି କପଟ ହେ ଯୋଦ୍ଧେ
ଯୁଦ୍ଧକୁ ଦେଖିଲେ ଡର ?

ଫେରିଯାଇ ଥିବା ପତ୍ନୀ ପଣତରେ
ଲୁଚି ରହିଥାନ୍ତ ବୀରେ,
ତା ତ ଅସମ୍ଭବ, ପତ୍ନୀ ଶବଦପୁର
ଭସାଉଛି ନେତ୍ରନୀରେ ।

ନ ଦେବ କି ଗଲେ କ୍ଷତ୍ରିୟ ରମଣୀ
ଗୋଇଠା ପ୍ରହାର ପରେ
ଖଣ୍ଡାଇଛ ବୋଲି ଆର୍ଯ୍ୟବାଳାଗଣେ
ବିଧର୍ମ୍ମୀ ନୃପ-ପଦ୍ମରେ ।

ନ ମରି ରହିଛ ଶୁଣିବାକୁ ନାରୀ—
ମର୍ମନ୍ତୁଦ ତିରସ୍କାର,
ହେବ କି ହେ ବୀରେ ଯଷ୍ଟି ମୃଦୁଭାଷା
ନାରୀ କ୍ରୋଧାନଳରୁଁ ତାର ?

ରଖିଲ ଖ୍ୟାତି ଯାବତ ଚନ୍ଦ୍ରାର୍କେ
ଦେଇ ରଣେ ପୃଷ୍ଠଭଙ୍ଗ,
ହିନ୍ଦୁ-ରମଣୀର ହୃଦୟେ କରାଇ
ଯବନର କର-ରଙ୍ଗ ।”

ଅଧର କମ୍ପନ ହୁଏ ବୀରଙ୍କର
ଶୁଣି ନୃପ କଟୁବାଣୀ,
ଭାବନ୍ତି କି ହେଉ ନ ହାଣିଲ ନିଜ
ମସ୍ତକକୁ ନିଜ ପାଣି !

କ୍ରୋଧାନଳେ ଜ୍ୱଳ ବଚନ ଗାଳନ୍ତ
କାଳରୂପୀ ବିଶ୍ୱନାଥ,
ଡର ରହୁଥାନ୍ତେ ସେ ରୂପ ଦେଖିଲେ
ଆପେ ପ୍ରଭୁ ବିଶ୍ୱନାଥ ।

ବିଷଦଗ୍ଧ ବାଣୀ— ବାଣ ପ୍ରହାରନ୍ତ
ସୈନ୍ୟଗଣଙ୍କର ହୃଦେ
ଧୂମକେତୁ-କରେ ସମର୍ପିଲେ ବୋଲି
ହିନ୍ଦୁ-ରମଣୀ-କୁମୁଦେ ।

"ଅଶ୍ଚମାନ ଯେବେ ବନ୍ଧନ୍ତ ହେ ଘରେ
ସମର-ଅନଳେ ପଣ,
ଜଳ ଅବା ଜାଳ, ଦେଖାଅ ଏକ୍ଷଣି
ଅଭୂତପୂର୍ବ ସାହସ ।

ନିଜ ରକ୍ତେ ଅବା ଶତ୍ରୁରକ୍ତେ ଆଜ
ରଣଚଣ୍ଡୀ ପୂଜ ଘରେ,
ନିଜ ଶିର ଅବା ଅରାତି-ମସ୍ତକ
ଗଡ଼ାଅ ଧରଣୀ-ଥରେ ।

ପୋଷି ଶତ୍ରୁ ଧ୍ୱଂସ ଭରସା ହେ ଯୋଧେ
ଅସ୍ତ୍ରୁଧ ଉତ୍ତୋଳ ହସ୍ତ
ଯୁଦ୍ଧ କର, ଅର— ମୁଣ୍ଡେ ରଣଚଣ୍ଡୀ—
ସର୍ବ ଅଙ୍ଗ ହେଉ ଭସ୍ମ ।"

କୃପାଣ ହସ୍ତରେ ଧାଇଁଲେ ଯୋଦ୍ଧାଏ
'ଜୟ ବିଶ୍ୱନାଥ' ରବେ,
କମ୍ପିବେ କି ସତେ ସପତ ବ୍ରହ୍ମାଣ୍ଡ
ମୁହୂର୍ତ୍ତି ମଧ୍ୟେ ଆହବେ ।

ଅଦମ୍ୟ ସାହସେ ଗମିଲେ ସକଳେ
ରୁଣ୍ଡ ହେଲେ ରଣାଙ୍ଗନେ,
ଖେଦେରେ-ଜାର କରି ଗର୍ଜିଲେ ଭୀଷଣ,
ଡାକଲେ କବା ଯବନେ !

'ଜୟୀ ହେଲେ' ଭାବି ଫେରି ଯାଉଥିଲେ
ବଙ୍ଗେଶ୍ୱର ସେନାପତି,
ସମର ଇଚ୍ଛିଲେ ଦେଖି ଓଡ୍ରେଶ୍ୱର
ରଣ ଇଚ୍ଛା ବଳବତୀ ।

ବିରାଟ ବାହିନୀ ଚଳାଇଲେ ପୁଣି
ଉତ୍କଳୀୟ ନାଶ ଆଶେ,
ମିଳିଲେ ଯାରଙ୍ଗ ନରେଶ୍ୱରଙ୍କର
ମୁଷ୍ଟିମେୟ ସୈନ୍ୟ ପାଶେ ।

ଲାଗିଲା ତୁମୁଳ ସଂଗ୍ରାମ ସେ ଦିନ
ଦିନ ଅବସାନ ଯାଏ,
ବହିଲା ଧରଣୀ ସବୁ ଅଙ୍ଗେ ଶବ
ନ ରହିଲା ଶୂନ୍ୟ ଠାଏ ।

ଅଦମ୍ୟ ସାହସେ ଯୁଝି ଉତ୍କଳୀୟେ
ହାଣନ୍ତି ଯେତେ ମସ୍ତକ,
ଗଡ଼ି ଗଡ଼ି ଯାଇ ପଡ଼ନ୍ତେ ବସୁଧା
ନଦୀ ବଢ଼ଏ ଶୋଣେଷୋଦକ ।

ମୃଗଯୂଥେ ଯଥା ବେପଥନ ଜାତ
ପଶୁରାଜ ଆକ୍ରମଣେ,
ତଥା ଖଣ୍ଡନାଥେ ନଜ ଆଟେ ଦେଖି
ଶତ୍ରୁ ସେନା ସିଂହ ମଣେ ।

ସମର-କ୍ଷେତ୍ରରେ ସାରଙ୍ଗେଶ-ବାଜ
ଆତଙ୍କ ଜନ୍ମାଇ କ୍ଷଣେ
ପାଶ୍ୱ-ଦଳେ ପଶି କାଳ-ପାଶ୍ୱବାରେ
ପକାଏ ଯବନଗଣେ ।

ଖଣ୍ଡନାଥ-ସୁତ ସପ୍ତଦଶ ବର୍ଷେ
କରଇ ଅଜ ଯେ ରଣ,
ମନେ ପଡ଼େ କୁରୁ— ସମର-ସାଗରେ
ଅଭିମନ୍ୟୁ ଦୃଢ଼-ପଣ ।

ଖେଳି ଖେଳି ଯାଏ ଅଶ୍ୱପୃଷ୍ଠେ ପୁଣ୍ଡ୍ର,
ତରବାରି ବେଗେ କରେ,
କାଟଇ ସେ ଯେତେ ଯବନ ମସ୍ତକ
ଅସମର୍ଥ ଗଣନରେ ।

ଭୂପନାଥ ଅଙ୍ଗ ଝାଳ ପୋଛିବାକୁ
ପାଏ ନାହିଁ ଅବସର,
ଅବିଶ୍ରାନ୍ତ ଶତ୍ରୁ— ଶିର କାଟେ ସୁତ
ବୁଲାଇ ଖଡ଼୍‌ଗ-ବର ।

ଆଚମ୍ବିତ ହୁଏ ବଙ୍ଗେଶ୍ୱର ସେନା
ଦେଖି ଅଦ୍ୱିତୀୟ ରଣ,
ପଦ୍ମବନେ ଯଥା ନିର୍ଭୟେ ଭ୍ରମଇ
ଏକାକୀ ମତ୍ତ-ବାରଣ ।

ଅଗଣିତ ସୈନ୍ୟ କାଟଇ ନନ୍ଦନ
ତଥାପି ତା ଚଉକତ
ପୂରିଥାନ୍ତି ଅରି ପତଙ୍ଗେ ଯେସନ
ପାବକ ପାଶେ ଉଡ଼ନ୍ତି ।

ନ ସରନ୍ତି ଶତ୍ରୁ ସୈନିକ ପାଶରୁ
ସମରେ ସୁତ ଅଶକ୍ତ,
ତଥାପି ପ୍ରଫୁଲ୍ଲ ବଦନେ ଯୁଝଇ
ଧନ୍ୟ ତା ରଣ ଅବ୍ୟକ୍ତ ।

ଅଚ୍ଛେଦ୍ୟ କବଚେ ଖଚିତ ବକ୍ଷତ
ବର୍ତ୍ତୁଳ ଘୂର୍ଣ୍ଣାସ୍ତ୍ରମାନ
ଦୃଢ଼ ଢାଲ ତରୁ— ସ୍କନ୍ଧେ ବାଜ ଭ୍ରଷ୍ଟ
ଅରି ଶ୍ରେଷ୍ଠ ଅସ୍ତ୍ରମାନ ।

କାର୍ମୁକ ଅଦ୍ଭୁତ ଶର-ମେଢ଼ ଏକ
ପୃଷ୍ଠ ସ୍କନ୍ଧେ ପାଏ ଶୋଭା,
ଝଟକନ୍ତ ଯନ୍ତ୍ର ପରଶୁ କୁଠାର,
ଉଡ଼େ ଧ୍ୱଜା ମନଲୋଭା ।

ଆପାଦ-ମସ୍ତକ ପୂରି ରହିଥାଏ
ତା ଶରୀରେ ତୀକ୍ଷ୍ଣ ଛୁରୀ,
ଦଶ ଅଙ୍ଗୁଳିରେ ଝଟକନ୍ତ ଦଶ
ହୀରକଖଞ୍ଜା ଅଙ୍ଗୁରୀ ।

ସ୍ୱପ୍ନ-ସାଗରେ ମଜ୍ଜିଲେ ଯବନେ
ପୁତ୍ର ନାଗା ବେଶ ଦେଖି,
ଭାବିଲେ 'ଏ ରୂପ ଦେବେ ଅଗୋଚର
କଳ୍ପନା ନ ଥିବ ଲେଖି ।'

ଗର୍ବିତ-କଣ୍ଠ କାର୍ତ୍ତିକେୟ ସମ
ଜରତ ରତ ସମରେ,
ଦେଖି ବିପକ୍ଷର ଆଖି ବୁଜଗଲା
ପ୍ରଶଂସିଲେ ହୃଦୟରେ ।

ଯୁଝିଲେ କି ହେବ ପ୍ରସଟ ଆଟରୁ
ବାହୁଡ଼ିବ ଏକୁଟିଆ
କିଏ ବା ବିଶ୍ୱାସ କରିବ, ସେ କଥା
ଶୁଣିଲେ କମ୍ପଇ ହିଆ ।

ସ୍ୟନ୍ଦନର ପଦ          ଛିନ୍ନ ହେବା ଦେଖି
କ୍ଷତ୍ରିୟ-କୁଳ-ଭାସ୍କର
ଲମ୍ଫଦେଲ ତୁରି          ଶତ୍ରୁ-ସ୍ରୋତେ, ଯାହା
ପୂରିଲା କାଳ ମୋହର ।

ତଥାପି ସାହସ          ଅବଲମ୍ବି ସେହୁ
ଅରି-ମୁଣ୍ଡ ଗଣ୍ଡା ଗଣ୍ଡା
ଗଡ଼ାଇ ଦଅଇ          କାଟି ଖଡ଼ଗରେ
ଶ୍ମଶ୍ରୁଯୁକ୍ତ ଲଣ୍ଡା ଲଣ୍ଡା ।

ଯେତେକ ବିକ୍ରମ          ଦେଖାଇଲା ସବୁ
ଅକାଳେ ହେଲା ବିଫଳ
ଦେଖି, କହେ ପୁତ୍ର          "ଦେବ ! କାଳି ! ତବ
କର-ପଦ୍ମେ ସିନା ଫଳ ।

ଧମନୀରେ ରକ୍ତ          ପ୍ରବାହିତ ଯେତେ—
ବେଳଯାଏ ହେଉଥିବ,
ମୋ କର୍ତ୍ତବ୍ୟ ମୁହିଁ          ସାଧିବ ଭବାନି !
ଯାଉ ଅବା ରହୁ ଜୀବ ।

ମାଗେ ତବ କରେ          ସମର୍ପିଲି ମୋର
ସ୍ନେହମୟୀ ଶଶିକଳା,
ନ କହେ ଯେପରି          ଇତିହାସ ଦିନେ
କ୍ଷତ୍ରିୟ ଯବନ ଶଳା ।

ରସନା ସ୍ତବନ     ଡଥଇ ପ୍ରମାଣ
କାଳୀ ନାମ ଉଚ୍ଚାରଇ,
ନ ଦେଖିବ ବେଳି     ଜୀବନ୍ତ ଯବନ
କୃପାଣରେ ପ୍ରହାରଇ ।

ଚରଣରେ ଚଳି     ରଣରେ କୁମର
ମାରଣରେ ହେଉଁ ବ୍ରତୀ,
ଅତି କୋପି ଶସ୍ତ୍ର     ପ୍ରହାରିଲେ ସର୍ବେ
ଏକାବେଳେ ସୁତ ପ୍ରତି ।

ମୁଷଳ ଧାରରେ     ବାଣ-ବୃଷ୍ଟି ପରି
ପଡ଼ନ୍ତେ ଆୟୁଧରାଜ
ଶରଜାଲ ପାଇଁ     ଭୂପନାଥ ଧୈର୍ଯ୍ୟ
ଗଲା ଏକାବେଳେ ଭାଜି ।

ଜମା ହୋଇଗଲା     ପର୍ବତ ଆକାରେ
ପୁଞ୍ଜ ପଡେ ଶସ୍ତ୍ରସବୁ,
ଲୁଚିଲା ତା ମଧ୍ୟେ     ଶରୀର ତାହାର
ଉଷରିଲା ଜୀବ ଭରୁଁ ।

ଜୟ ରବ ହେଲା     ଅରାତି ପକ୍ଷରୁ
ସେହିକାଳେ ଘୋରତର,
ଦୂରେ ରଣରତ     ବଶ୍ୱନାଥଙ୍କର
କର୍ଣ୍ଣକୁ ହେଲା ଗୋଚର ।

ସୁବ୍ରତ ନିଧନ ଜାଣିଲେ ସ୍ୱଜନ
ସମ୍ବରିଲେ ଜୟ ଆଶା,
ସଙ୍ଗେ ସଙ୍ଗେ ମଧ୍ୟ ସମ୍ବରିଲା ସାର୍ଦ୍ଧ
ପ୍ରଶ୍ୱାସ ତାଙ୍କର ନାସା ।

ନିଜ ପ୍ରାଣ ମଧ୍ୟ କାଲ ନିକଟକୁ
ଯିବାକୁ ନ ଥିଲା ଡେରି,
ମାରୁଥିଲେ ମିଶି କେତେ ସେ ଯବନ
ତାଙ୍କ ଗୃହପାଶେ ଘେରି ।

ଭାବିଲେ ନୃମଣି 'ହେବ ଏହିକ୍ଷଣି
ଯବନ-କରେ ମରଣ,
ଏଥୁଁ ଶ୍ରେୟ ନିଜ ହସ୍ତରେ କରିବା
ମୃତ୍ୟୁକୁ ଆଗୁଁ ବରଣ ।'

ଏହା ଭାବି ଏକ ଛୁରିକା ଆଘାତେ
ଛେଦ କଲେ ନିଜ ହୃଦ,
କଲେ ଜୟ ରବ ଅତି ଆନନ୍ଦରେ
ବିପକ୍ଷୀୟ ସୈନ୍ୟବୃନ୍ଦ ।

## ସଂକଳ୍ପ

ଢନକର ପ୍ରାତେ              ସ୍ନାନ ସାରି ଦ୍ୱିଜ
ଦେବ ମନ୍ଦିରରୁ ଫେରି
ସୈନ୍ୟ ଠୁଳ ଲାଗି              କରେ ଧରି ଧୀରେ
ବଜାଇଲା ରଣଭେରୀ ।

ଜମା ହେଲେ ଅଶ୍ୱେ              ଚଢ଼ି ବୀରଗଣ
ଧର-ବେଷ୍ଟିତ ପ୍ରାନ୍ତରେ,
ରଣ-ମଦେ ତାଙ୍କ              ଶରୀର କମ୍ପଇ
ପ୍ରକମ୍ପିତ ଅଶ୍ୱବରେ ।

ସ୍ୱଜନଜନନୀକ              ରତ୍ନ-ସିଂହାସନେ
ବସାଇବ ରଘୁବୀର,
କେତେ ଉଚ୍ଚ ଆଶା              ମନାହି ମାନସେ
ପୋଛୁବ ତା ନେତ୍ରନୀର ।

ଏଥି ଲାଗି ତାର              ପୁଲକେ ପୂରିତ
ସର୍ବ ଅଙ୍ଗ ରଙ୍ଗଭଙ୍ଗେ,
ଚଳେ ଏକ ଅଶ୍ୱେ              ବସି ସୁନ୍ଦରୀକ
ବସାଏ ଅନ୍ୟ ତୁରଙ୍ଗେ ।

କ୍ଷତ୍ରିୟ ରମଣୀ ଶଶିକଳା ଆଜ
ସାଜ ଦବ୍ୟ ନାଷ୍ଟି ବେଶ
କଶିବ ଅଞ୍ଚଳ— ପଣ ଗୁରୁବାକ୍ୟ
ଭଣିବାକୁ ଅରି-କେଶ ।

ଯବନ ଗଜହ ଉଠାଇବ ଦ୍ୱନ୍ଦ୍ୱ—
ସ୍ଥାନରୁ ବୋଲି ସୁନ୍ଦରୀ
କରବାଲ-କରେ ବ୍ରତ-ଭୂଷଣରେ
ବସିଅଛି ବୀର ପରି ।

ରତ୍ନ-ସିଂହାସନ ଦେଖାଇ ବ୍ରାହ୍ମଣ
କେମାକୁ କହନ୍ତେ ସମ୍ବୋଧି,
"ଦେଖ ଦେବି ! ଏହି ବେଣୀ ବନ୍ଧୁ ଯନୁଁ
ଆବଶ୍ୟକ ଅଛି ବୋଧି ।

ଶୂନ୍ୟ ଅଛି ତାହା ସୃଜନ ସମୟୁଁ
ସୁଯୋଗ୍ୟ ପାତ୍ର ଅଭାବେ,
କର ଅଲଙ୍କୃତ ତୁମ୍ଭେ ଏବେ ତାକୁ
କ୍ଷତ୍ରିୟୋଚିତ ସ୍ୱଭାବେ ।

ଉତ୍କଳର ଭଗ୍ନ ଭଗ୍ନ ଅଙ୍ଗ ପୂରି
ରହିଛି ଯେତେ ସମ୍ପଦ,
ଲୁକ୍କାୟିତ ପୁଣି ଯେତେ ଦୈନ୍ୟ ଯନ୍ତ୍ରଁ
ସେବିବେ ତୁମ୍ଭର ପଦ ।

ନିଜେ ତ ବିପଦ ଦେଇଗି ଲଭିଅଛି
ଜୀବନରେ ମହାଶିକ୍ଷା,
ଉତୁରିଛି ପୁଣି ଦୁଃଖ-ପରୀକ୍ଷାରୁ
ଘେନିବାକୁ ନବ ଦୀକ୍ଷା ।

ମୁଁ ଅବା କି ଶିକ୍ଷା ଦେବି କନ୍ୟାମଣି !
ଆଶୀର୍ବାଦ ଦିଏଁ ତୋତେ,
'ଅଗତି ବିଜାଣି କର ସଙ୍ଗେ ଧରି
ଧର୍ମ-ପିତା ରୂପେ ମୋତେ ।'

ମରହଟ୍ଟା ରାଜ୍ୟ ଜନମ ମୋହର
ମରହଟ୍ଟୀ ଦ୍ୱିଜ ମୁହିଁ
ଦଶ ବର୍ଷ ଦିନୁଁ ଆସିଲି ଏଣିକି
ନ ପଗ୍ରୁର କାହାକୁହିଁ ।

ଜନକ ଜନନୀ ସ୍ନେହ ମୁଁ ଛାଡ଼ିଲି,
'ଯବନର ଅତ୍ୟାଚାର
ଆର୍ଯ୍ୟବାଳା ପ୍ରତି' ଗୁରୁ ମୁଖେ ଶୁଣି
ବହିଲି ଦୁଃସହ ଭାର ।

ନ ବହିଲା ଚିତ୍ତ ମାତା କୋଳେ ମୋର,
ପିତା-ସ୍ନେହ-ଆଲିଙ୍ଗନେ,
ଲଭୁଥିଲି ଯେତେ ଏକାକୀ ଆଦର
ତେଜିଲି କି ଭାବି ମନେ ।

ସ୍ୱତାଳୀରୁ ଲୁଚି ଆସିଲୁ ସଙ୍ଗରେ
ସ୍ୱଷ୍ଟଶାଳୀ-ପଙ୍କୀ ଧରି
କେତେ ବନେ କେତେ ଦେଶ, କେତେ ନଈ
ଗିରି ଅତିକ୍ରମ କରି ।

ଦରିଦ୍ର କୋଷ୍ଟରେ, ଘରେ ଚୌର୍ଯ୍ୟ-ବୃତ୍ତି
ଥିଲା ଆମ୍ଭ ବ୍ୟବସାୟ,
ଛିଦ୍ର-ସନ୍ଧାନର ପାହାଡ଼-ଖୋଲରେ
ଜମାଉଁ ସଞ୍ଚିତ ଆୟ ।

ଅଦ୍ଭୁତ ଶକତ ଅଛି ମୋ ବାଣୀର
ସମାଜସ୍ଥ-ସକଳେ
ତେଜି ନ ପାରନ୍ତି ସାହଚର୍ଯ୍ୟ-ସୁଖ
ମିଳନ୍ତି ଦଳକୁ ଦଳେ ।

ଅଦ୍ୟାବଧି ପୂର୍ବା ଅଛି ସେ ଶକତ,
କରଇ ତାର କର୍ତ୍ତବ୍ୟ,
ସଗର୍ବେ କହୁଛି ଥିବ ଆଜୀବନ
ନ ଫିଟାଇ ଭବିତବ୍ୟ ।

ଧନବୃଦ୍ଧି ସଙ୍ଗେ ବଢ଼ିଗଲା ଦଳ,
ବଢ଼ିଲା କ୍ରମେ ସାହସ,
ପ୍ରତିବନ୍ଧ କରି ପରର ସାଧନା
ହୃଦୟ ସଦା ସରସ ।

ଉତ୍କଳ ବର୍ଷରେ          ସଙ୍ଗେ ସଙ୍ଗେ ଯେତେ
    ଅର୍ଜିଲୁଁ ବଳ ବିଭବ,
ଲଗାଇଲୁଁ ସେହି          ଚୌର୍ଯ୍ୟ ବ୍ୟବସାୟେ
    ମଣିଲୁଁ ତାକୁ ଗୌରବ ।

ସେ ବୃତ୍ତିରୁ ନୋହୁଁ          ଅଦ୍ୟାପି ବଞ୍ଚିତ
    ନ ହୋଇବୁ ଆଜୀବନ,
ଧରିଥିବୁ ସର୍ବେ          ସେହି ଦୃଢ଼-ବ୍ରତ
    ବପୁର ସୁରତ ଧନ ।

ପ୍ରତିଜ୍ଞା କରିଛୁଁ          ଧରମ ରକ୍ଷଣେ
    ଢାଳିଦେବୁଁ ଧନ ପ୍ରାଣ
ଆଜୀବନ-କୃତ—          ପାପ-ପାସୋରାରୁ
    ଲଭିବାକୁ ପରିତ୍ରାଣ ।

ମିଳିଛି ସୁଯୋଗ          ତୁମ୍ଭ କରେ ଏବେ
    କର ସେ ପଣ ପାଳନ
ତୁମ୍ଭର ଶୀକରେ          କଳୁଷରାଶିର
    କରାଇବୁଁ ପ୍ରକ୍ଷାଳନ ।

ପରାଙ୍ଗ ପୋଷିତ          ବାସନା ଆମ୍ଭର
    ସମର୍ପିଲୁଁ ତବ କରେ
ସରବ ସର୍ମାଦ          ଜୀବନ ସର୍ବସ୍ୱ
    ବସ ସିଂହାସନ ପରେ ।

ରଣ-ବାଦ୍ୟମାନ ଦ୍ବନ୍ଦ-ବେଶା ପରେ
ବସ ଦେବ ! ଆଜଠାରୁ
'ଭବାଣୀ' ନାମରେ, ମିଳିଅଛ ଯେଣୁ
ଭବାଣୀଶ କରୁଣାରୁ ।
ଗ୍ରହଣ କର ଏ ଶୀର ଚୂଡ଼ା ଏଦ୍ଧ
ସୁସଜ୍ଜିତ ସେନା ସଙ୍ଗେ,
ମିଳନ୍ତୁ ଯେ ଏଜ ଚୂଡ଼ା ନସ୍ତନରେ
ଲୁଚନ୍ତୁ କେହ ଭ୍ରୂଭଙ୍ଗେ ।"
ଭ୍ୱଷିଲା ଭବାଣୀ ଧର୍ମ-ପିତୃ-ବାକ୍ୟେ
ଲଭି ଅଦଭୁତ ଶକ୍ତି
ଜନକେ ସମ୍ବୋଧି, "ପାଳିଲି ଆଦେଶ
ରହୁ ତବ ପଦେ ଭକ୍ତି ।"
ଅଶ୍ରୁ ଅବତର ସ୍ବର୍ଣ୍ଣ ସିଂହାସନେ
ଅନୁପମା ବାଳାମଣି
ବସନ୍ତେ ଅବ୍ୟକ୍ତ ଶୋଭା ବିକାଶିଲା,
ରଚନା ନ ପାରେ ଭଣି ।
ପ୍ରେମ-ରସ ପୁଣି ଶୀର-ରସ ମିଶି
ବାମା-ରୂପେ ମୂର୍ତ୍ତିମନ୍ତ,
ଦେଖି ନ ଥିଲା ଯା ଅଦ୍ୟାପି ପାତାଳ,
ଧରଣୀ, ଅନନ୍ତବନ୍ତ ।

ହେଲେହେଁ ରୂପସୀ ରୂପାସ୍ତ୍ରର ଅସ୍ତ୍ର,
ତା ନେତ୍ରାନ୍ତିକ ତୀର କାମ
ଦୂରେ ଲୁଚି ରହେ, ସାଧି ନ ପାରଇ
ନିଜର କର୍ତ୍ତବ୍ୟ କାମ ।

ଗାମ୍ଭୀର୍ଯ୍ୟ-ରଞ୍ଜିତ ବଦନ-ମଣ୍ଡଳେ,
ଯୁବକ-ନୟନ-ଚୋର
ପଶି ନ ପାରଇ ଦୃଷ୍ଟି-ବାଣେ ଲଭି
ଅସହ୍ୟ ଯନ୍ତ୍ରଣା ଘୋର ।

କମ୍ପନକୁ ଡରି ବନ୍ଧୁଲି-ଅଧରେ
ନ ଚୁମ୍ବେ ହୃଦୟ-ଅଳି,
ଧାବଇ କି ନଳ ଧୃଷ୍ଟତା ଦର୍ଶନେ
ଥରେ ସେ ରାଗରେ ଜଳି ?

କପାଳେ ଶୋଭିତ ଅଳଙ୍କାର-ମଣି
ଝଲି ଚମକାଏ ଚିତ୍ତ,
କୁନ୍ତଳ-ଶୈବାଳ— ଲେଖି ମନ-ମୀନ
ରୌଦ୍ର-ଭ୍ରମେ କବା ଶାନ୍ତ ?

ଉଚ୍ଚ-ଘଞ୍ଚ-କୁଚ — ହାର ତଳେ ସ୍ଥିର
ଲୁଚିବାରୁ ମୁଖଟୀସ୍ୱ
କାମୁକର ମୁଖ — ଗରଳେ ଝଟଳ,
ନ କରେ ତାର-ସ୍ୱକଷ୍ଟ ।

ନ ଲେହ୍ଲ ରସନା ଲେହନ ପ୍ରଧାନ
କାବା ହୋଇଯାଏ ଶୁଖି,
ଫଣି-ମଣି ସମ ପଦକ ଦେଖାଇ
ଡରାଏ କିବା ସୁମୁଖୀ ?
ଡମରୁ-ମଧ୍ୟର କ୍ଷୀଣ କଟି ଦେଖି
ପାପିଷ୍ଠ ମୀନକେତନ
ଡର ଲୁଟେ ଯବ ଶିବ-ବାଦ୍ୟ, ଯନ୍ତ୍ରୁଁ
ସ୍ଫୁରଇ ମେଖଳା ସ୍ୱନ ।
ନଚେ କାମ ଯହିଁ କମ୍ପିତ-ହୃଦୟ
ତହିଁ ଥିବା କାମୀ କେତେ ?
ହସ୍ତ-ପ୍ରସାରଣ— କାମନା କରିବ
ବଧୂ-ଜମେ ଯେତେ ଯେତେ !
ପଦ୍ମ-ଚରଣାର ଊର୍ଦ୍ଧ୍ୱ-ଅଙ୍ଗେ ଉର
ଚରଣେ ଯୁବା-ମାନସ
ଆଶ୍ରା ନଏ, ଯବ ଭବାଣୀ ପଦରେ
ଥିବ ମକରନ୍ଦ ରସ ।
ଲାବଣ୍ୟଜଳରେ ପଦ-କମଳରୁ
ସ୍ରବଇ ଅମୃତଧାର,
ନ ହେବ କି ହେବୁ କାମି-ଜନ-ଗଣ—
ମଧୂକର-ପରକାର ?

ଶୋଭା ଦେଖି ସର୍ବେ ଚାହିଁକା ହୋଇଲେ
ମାଜ ଶେଷେ ରମ୍ୟ-ପଦେ
ଦୃଷ୍ଟି ଦେଲେ, ଭବ ଅଭୟ-କମଳ
ଆଶ୍ରୟ ଦେବ ଆନନ୍ଦେ ।

ଜୟ ଜୟ ରବ ହେଲା ସେ ଦଳରୁ
'ଜୟ ମା ଭବାନୀ ! ଜୟ'
ଜୟ ଶିଳେଚନ— ଅଙ୍ଗ-ଭଣ୍ଡାରଣି !
ସକଳେ ଦଅ ଆଶ୍ରୟ ।

## ବିସ୍ମୟ

ପାରଙ୍ଗ-ବିଜୟୀ ବଙ୍ଗ-ସେନାପତି
ସୈନ୍ୟ ସଙ୍ଗେ ଜୟ ରବେ
ପ୍ରବେଶିଲା ଯାଇ ବଙ୍ଗେଶ ନିକଟେ
ଉତ୍ଫୁଲ୍ଲ-ଅଙ୍ଗେ ଗରବେ ।

ନ ଲାଗେ ଚରଣ ଧରଣୀତଳେ ତାର
ଊର୍ଦ୍ଧ୍ୱକୁ ଉଠାଏ ଗର୍ବ,
ଷାଣ୍ଢଧର୍ମୀ ପାଶେ ଥାଏ କି ବିନତି—
କରିଇବା ଗୁଣ ସର୍ବ ?

ନିଜେ ବସୁନ୍ଧରା ଶଙ୍କିଲେ ବୋଲି କି
ନ ପଡ଼ିଲା ପାଦ ତଳେ ?
ଅବା ଉପରକୁ ଟେକିଲେ ଶିରକୁ,
ସାହସ ଗୁଣାଢ଼ ବଳେ ?

ବିଧିମତେ ନମି ନବାବ ଛାମୁରେ
·କରଯୋଡ଼େ ସେନାପତି
ସଦର୍ପେ ଭାଷିଲେ, "ସମ୍ଭୋଗ କରନ୍ତୁ
ଉତ୍କଳର ରୂପବତୀ ।

ପାଇଛନ୍ତି ସେଠି                    ତ୍ରିଦିବ-ଦୁର୍ଲ୍ଲଭ
ସୁନ୍ଦରୀ ରମଣୀମଣି,
ନିର୍ଭୟେ ଭୋଗିବେ                    ନିଷ୍କଣ୍ଟକ ଯାହା
କେତକୀ-ସ୍ୱର୍ଣ୍ଣ-ବରଣୀ ।

ସମ୍ବାଦ ନେବାକୁ                    ନାହିଁ କେହୁ ତାର
କୁଟୁମ୍ବ ମଧ୍ୟରେ ଜଣେ,
ପ୍ରମାଦ ପଡନେ                    ପ୍ରାଣ ବିସର୍ଜିଲେ
ସେନାପତି-କରେ ରଣେ ।"

ଶୁଣିଥିଲେ ବଙ୍ଗ—                    ନବାବ ପୂର୍ବରୁ
ସମରର ସମାଚାର,
ଗଡ଼-ଧ୍ୱଂସ ପରେ                    କନ୍ୟା ପ୍ରାପ୍ତି କଥା,
ଆହବ ଦ୍ୱିତୀୟ ବାର ।

ରହିଁ ବସିଥିଲେ                    ସ୍ୱତକ ପର୍ଯ୍ୟେ
ଅନାଡ଼ିବ ଶାନ୍ତ-ବାର
ସେନାପତି ଆସି                    ସମର୍ପି ସୁନ୍ଦରୀ
ଶିର-ଭୂଷା ଦେବ ମାର ।

ମାତ୍ର ସେ ଦୁରନ୍ତ                    ଆସିଛନ୍ତି ଏକାକୀ
ସଙ୍ଗେ ନାହିଁ କନ୍ୟା-ରତ୍ନ,
କହୁଅଛନ୍ତି ପୁଣି                    "ପାଇଛନ୍ତି ମଣି,
ପଠାଇଛନ୍ତି କରି ଯତ୍ନ ।"

ଅସମ୍ଭବ କଥା ହୁସେନ କହନ୍ତି
ଯୁବତୀକୁ ରଖି ଘରେ
ନିଜ ଭୋଗ ଲାଗି ବିଶ୍ୱାସ-ଘାତକ,
କି ଭାବ ମୋତେ ନ ଡରେ ?

ଡରୁ ବା ନ ଡରୁ ଅଗ୍ରେ ଏହାକୁ ମୁଁ
ବନ୍ଦୀ କର ବନ୍ଧ-ଶାଳେ,
ପରେ ଇଚ୍ଛା ହେଲେ ଶୁଣିବ କାକୁତି,
ନ ମାନଇ ନରପାଳେ ।

ଏସନ ବର୍ବର ଅଙ୍ଗରକ୍ଷକକୁ
ଆଦେଶିଲେ ବଙ୍ଗପାଳ—
"ବନ୍ଦୀ କର ବେଗେ ବିଶ୍ୱାସଘାତକେ,
ଫାଟିଛି ତାର କପାଳ ।

ରମଣୀକୁ ରଖି ନିଜ ନିକେତନେ
ଅପତ୍ୟ ଭାଷଇ ଦୁଷ୍ଟ,
ଶୃଙ୍ଖଳେ ଆବଦ୍ଧ ନ ହେବା ପର୍ଯ୍ୟନ୍ତ
ନୁହେ ମୁଁ କେବେହେଁ ତୁଷ୍ଟ ।"

ଆଦେଶ ପାଳନେ ଶେର୍ ସୁଲତାନ
ତିଳାର୍ଦ୍ଧେ ନୋହୁ ଶଙ୍କିତ
ଶୃଙ୍ଖଳେ ବାନ୍ଧିଲା ସେନାଧିନାୟକେ
ବର୍ବର କର୍ତ୍ତବ୍ୟୋଚିତ ।

ବନ୍ଦୀ ସୈନ୍ୟଦଳ ଧୀର ସ୍ଥିର ସ୍ୱରେ
ଧୈର୍ଯ୍ୟ ଧରି ହୃଦେ କହେ,
"ପରମ ବିଶ୍ୱାସୀ ସେନାପତି ଆଜ
ବେଢ଼ି କ୍ଳେଶାଘାତ ସହେ ।

ଆଜନ୍ମ ଯେ ବୀର ନୃପ-ହିତ-ଅର୍ଥେ
ସମର-ଅନଳେ ଝାସେ,
ଅକୁଣ୍ଠିତେ ପ୍ରାଣ— ବଳି ଦେଇପାରେ
ଯେ ଜନ ଭୂପ ସକାଶେ,

ଯେଉଁ ସେନାପତି ନବାବ ନମିତ୍ତ
ସ୍ୱାର୍ଥ ନ ଚିନ୍ତଇ ଧନେ,
ଭାବଇ ଯେ ନିଜ ଶରୀର ରାଜସ୍ୱ,
ସେ ଆଜ ଶୃଙ୍ଖଳ ଘିନେ ।

ଆଦେଶ-ଲଙ୍ଘନ ଦୂରେ ଥାଉ, ଯେଣୁ
ଭାବ ସ୍ପୃହା ନାହିଁ ମନେ,
ସେ ଆଜ କପରି ଅବାଧ ହୋଇଲା
ନ କହ ଭବେ ବଚନେ ?

କେଉଁ ଦୋଷେ ଆଜ ଚିର-ବାଧ୍ୟ-ଜନ
ପ୍ରଭୁ ପାଶେ ଘୃଣାପାତ୍ର,
କି ଲାଗି ହୋଇଲ ଏ ଦୁର୍ଦଣ୍ଡ, ଯାର
ସ୍ମୃତି ନାହିଁ ଲବ ମାତ୍ର ?

ସଯତନେ ନାରା— ରତନେ ପଠାଇ
ସମର୍ପି ରାଜନ-କରେ
ନୃପ ଅଭିଳାଷ ପୂରାଇଲା ସେହୁ,
କପା ସେ ଶାଙ୍କୁଳ ଭରେ ?

କି ହେତୁ ରାଜନ ! ଦଣ୍ଡିଲେ ନିର୍ଦ୍ଦୋଷେ
ନ ଜାଣିବା ଯାଏ କେବେ
ନିଃସ୍ୱ ସେନ ଏତି ସ୍ଥିର ନୁହେଁ ପ୍ରଭୁ !
ସୁବିଚାରେ ଦଣ୍ଡ ଦେବେ ।"

ଶୁଣିଥିଲେ ସବୁ ବଙ୍ଗ-ଅଧିପତି,
ସମ୍ବୋଧନ ପଦ ସଙ୍ଗେ
ବିଚାର କରିବା ଶବ୍ଦାବଳୀ ଶୁଣି
କ୍ରୋଧାଗ୍ନି ବଢ଼ିଲେ ଅଙ୍ଗେ ।

ଭାଷିଲେ ରାଜନ "ବୃଥା ଅହଙ୍କାରୀ
ଦୁରାତ୍ମା କପଟାଚାର !
ଘରେ ରଖି ରାମା ନିଜ ଭୋଗ ପାଇଁ,
ମିଥ୍ୟା କହି ହେବୁ ପାର ?

ଛାଡ଼ ସେ ବାସନା, ପିନ୍ଧ ଥାଅ ବେଢ଼ି
ବାଲା-ବାହୁ-ପାଶ-ଛଳେ,
ସନ୍ତୁଷ୍ଟ ନୁହେଁ ମୁଁ ନ ଲଭିବା ଯାଏ
ଆଣିଛ ଯାହାକୁ ବଳେ ।

କାହିଁ ରଖିଥିଲ କହ ଏହିକ୍ଷଣି,
ଅଣାଇବ ସେହି ସ୍ଥାନୁ,
ତହୁଁରେ ଭୂମ୍ବର ବଚନ ଶୁଣିବ,
ଜାଳଇ କ୍ରୋଧ-କୃଶାନୁ ।”

“କେଉଁ ସ୍ଥାନ ତବ ଅଟେ ଅବଗତ ?
କରନ୍ତୁ ଅନୁସନ୍ଧାନ,
ଦୂରେ ଥାଉ ବାଳା, ନ ମିଳିବ କେବେ
ରମଣୀ ଅଣୁ ସନ୍ଧାନ ।

ପଠାଇଛି ମୁହିଁ ତବ ମନ୍ଦିରକୁ
ମିଥ୍ୟା ନାହିଁ ଏଥି ଲେଶ,
ପାଇଥିବେ ଧ୍ରୁବ ବିଶ୍ୱାସ ମୋହର,
ନ ସହିବ ବୃଥା କ୍ଲେଶ ।

ଅକାରଣେ ମୋତେ ଦଣ୍ଡିଲେ ରାଜନ,
କେଉଁ ଦୁରଭିସନ୍ଧି
ହୃଦୟରେ ପୋଷି ନିରପରାଧକୁ
କରାଇଲେ କପାଁ ବନ୍ଦୀ ?

ଆଶ୍ଚର୍ଯ୍ୟର କଥା ବଙ୍ଗେଶ୍ୱର ଆଜ
ନ ମାନଇ କୃତଜ୍ଞତା,
ସମର୍ପିଲି ଯେହୁ ଭୋଗ୍ୟ ବସ୍ତୁ ତାହା
ନିକଟେ କରେ ଶଠତା ।”

ଏତିକି କହୁଛି — ସାରଙ୍ଗ-ବିଜୟୀ
"ବନ୍ଦ କର" ବାକ୍ୟ ଶୁଣି,
ତିରସ୍କାର କଲେ — ବଙ୍ଗେଶ୍ୱର "ତୋତେ
ଡାକିଲାଣି କାଳ ଆସି ।

ଅବାଧ୍ୟତା କେତେ — ଦେଖାଉ ରେ ଦୁଷ୍ଟ
ଅସତ୍ୟଭାଷୀ ପାମର,
ସତ୍ୟେ ରକ୍ଷା ସିନା — ଅସତ୍ୟେ କି କେହୁ
ପାଇ ହୁଏ ସନ୍ତୋଷର ?

ସତ୍ୟ ଭାଷ ନରୁ — ଏକ୍ଷଣି କରିବି
ଏହି ଖଡ୍ଗେ ଶିରଚ୍ଛେଦ,
ଦେଖିବ ଏକ୍ଷଣି — ସତ୍ୟ ଅସତ୍ୟର
କିପରି ଅଛି ପ୍ରଭେଦ ।

ବିଶ୍ୱାସ ନ ହୁଏ — ବଚନେ ରେ ତୋର
କୁଟିଳ-ପ୍ରକୃତି ଅଟୁ,
ସାହସିକ ବୋଲି — ବୃଥା ବାକ୍ୟବ୍ୟୟେ
ବଙ୍ଗେଶ୍ୱରଙ୍କୁ ଭୁ ବଟୁ ।

ଛାଡ଼ ସେ ବାସନା — ଜୀବନରେ ଯେବେ
ଆଶା ଅଛି ସେନାପତି,
ସତ୍ୟ ଭାଷି ବେଗେ — ମାଗ କ୍ଷମା ଭିକ୍ଷା,
ବିବେଚକ ବଙ୍ଗପତି ।"

ନୃପ ବାଣୀ ଯେଣୁ ଅସହ୍ୟ ହୋଇଲା
କ୍ରୋଧୋନ୍ମତ୍ତ ସୈନ୍ୟଗୁଳ
ପ୍ରାମାଣିକ କଥା ଭାଷିଲେ "ଡକାନ୍ତୁ
ବାହକଙ୍କୁ ନରପାଳ !
ଅର୍ଦ୍ଧଶତ ସୈନ୍ୟ ଯବାଣ୍ଡ ଆଣିଲେ
ନାମ ତାଙ୍କ ଅଛି ଲେଖା,
ଦଣ୍ଡିବା ପୂର୍ବରୁ କରାଇ ଦେବେ କି
ସେମାନଙ୍କ ସଙ୍ଗେ ଦେଖା ?'
ଅଗ୍ରଣୀ ତାଙ୍କର ଅଛେ ସେ ନୁରଖାଁ
ଡକାନ୍ତୁ ପ୍ରଥମେ ତାଙ୍କୁ,
ତତ୍ପରେ ଅପର ସଙ୍ଗେ ଦେଖା ହେବ
ଜହ୍ନବ ଆଣିବେ ଯାକୁ ।"
ଶୁଣିବା ମାତ୍ରକେ ସାକ୍ଷ୍ୟ ନେବା କଥା
ଦାସେ ଆଦେଶିଲେ ନୃପ,
'ଡାକ ଏହ୍ୟକ୍ଷଣି ନୁରଖା କଏ ସେ
କପଟ ତାହାର ରୂପ ।'
ଆଜ୍ଞାବନ୍ଧ ବେଗେ ଶିବିରକୁ ଯାଇ
ଶିବିର-ରକ୍ଷକେ ପୁଛି,
ବୁଝି ତା ସମ୍ବାଦ ଫେରଆସି କହେ
"ନୁରଖାଁ ରଣେ ମୁହଁଛି ।

ଫେରି ନାହାନ୍ତି ସେହି ସାରଙ୍ଗ ସମରୁ
ଗମନାନୁକୂଳ ହେଲୁ,
ତା ଶିବିରେ କେହି ସୈନିକ ନାହାନ୍ତି
ଶିବିର-ରକ୍ଷକ ହେଲୁ ।”

କ୍ରମେ ଏହାପରି ବୁଝିଗଲେ ନୃପ
'ସବାସ୍ତି-ବାନ୍ଧକ-ଗଣ
ବାହୁଡ଼ି ନାହାନ୍ତି ଯେମାନଙ୍କ ନାମ
ବନ୍ଦୀ କହେ ଜଣ୍ ଜଣ ।'

ବିସ୍ମୟ-ସାଗରେ ବୁଡ଼ିଲେ ବେନିଏ
ଶୁଣି ଏହି ଦୁଃସମ୍ବାଦ,
ମାତ୍ର ନରପତି ଅବିଶ୍ୱାସ-ନାବେ
ଆରୋହି, ଭାବେ 'ପ୍ରମାଦ' ।

“ହୋଇପାରେ ସତ୍ୟ ସବାସ୍ତି-ବାନ୍ଧକେ
ଅଛିଥିବେ ରଣ-ସ୍ଥଳୁଁ,
ମାତ୍ର ସେନାପତି କିନ୍ତୁ ମାତ୍ର ଯୋଗ
କରିଥିବ କାହା ବଳୁଁ ।

ନିଶ୍ଚେ ଷଡ଼ଯନ୍ତ୍ର କରନ୍ତୁ ପାପିଷ୍ଠ
ଅଯୋଧ୍ୟା-ନବାବ ଅବା
ଦିଲ୍ଲୀ ଅଧୀଶ୍ୱରେ କେମା ସମର୍ପଣ
ଯୋଷି ଆଶା ଉବିତବ୍ୟା ।

ବଙ୍ଗେଶ ହେବାକୁ କରିଥିବ ଇଚ୍ଛା
ବଡ଼-ବାହୁବଳ-ବଳେ
ଜାଣି ମୋତେ ଦୁଷ୍ଟ, ନ ଛାଡ଼ିବ କେବେ
ପଞ୍ଜୁରୁ ମୋର କବଳେ ।

ବନ୍ଦୀ ହୋଇ ଥାଉ ଜଣା ଯିବା ଯାଏ
ସତ୍ୟାସତ୍ୟ ରହସ୍ୟର,
ସତ୍ୟ ଏହିକ୍ଷଣି ବୁଝିବ, ହୋଇବ
ବଶ କେବେ ଆଳସ୍ୟର ।

'ଆଳସ୍ୟରେ ହୁଏ କାର୍ଯ୍ୟ ନଷ୍ଟ', ଏହା
ମହତ ଜନଙ୍କ ଉକ୍ତି,
କର ତାକୁ ତ୍ୟାଗ ଏହିକ୍ଷଣି ବୁଝି
ପାଇବ ସନ୍ଦେହୁଁ ମୁକ୍ତି ।"

ଏପରି କହିବ ସୈନ୍ୟ ମଣ୍ଡଳକୁ
ପଚାରିଲେ ବଙ୍ଗେଶ୍ୱର,
'ଜାଣ କି ହେ କେହି ସତ୍ୟ ସମାଚାର
ସାରଙ୍ଗ-କନ୍ୟା ଖବର ?'

ଉତ୍ତରିଲେ ସର୍ବେ ଏକସ୍ୱରେ "ପ୍ରଭୁ
କନ୍ଦର୍ପ ସେନା-ନାୟକ,
ସର୍ବ ପରାମର୍ଶ— ମତେ ପଠାଇଲେ
ରମଣୀ ତତ୍ତ୍ୱ-ହାରକ ।

ରଚାଯାଇଥିଲା ଛନ୍ଦ ବେଶ ସେହ
ସବାରୀ ବାହକଙ୍କର,
ହନ୍ଦୁ ନବବଧୂ ଯେଉଁ ଆଡ଼ମ୍ବରେ
ଗମଇ ଶ୍ୱଶୁର ଘର ।

ଗମନର ପଥ ଅଙ୍କାଯାଇଥିଲା
କାଗଜରେ ସର୍ବମତେ,
ଯେଉଁ ମାନଙ୍କର ଧରି ପାର ହେବେ
ପରବରୁ ପରବତେ ।

ପତ୍ର ଯାହା ଲେଖା ହୋଇଥିଲା ଗ୍ରାମୁ
ନକଟକୁ ବଙ୍ଗେଶ୍ୱର,
ସର୍ବ ସମ୍ମୁଖରେ ପଢ଼ାଯାଇଥିଲା
ହେବାକୁ ସର୍ବ ଗୋଚର ।

ଏହି ସବୁ କଥା ହୋଇପାରେ ତବ
ଅଯୋଗ୍ୟ ପ୍ରମାଣ ପକ୍ଷେ,
ମାତ୍ର ଯାତ୍ରୀଙ୍କର ନର୍ବାଚନ, ପତ୍ର—
ପାଠାନ୍ତେ ସର୍ବ-ସମକ୍ଷେ ।

କରୁଥାଉଥାନ୍ତି ସନ୍ଦେହ ଶ୍ରୀଗ୍ରାମୁ,
ସେନାପତି ସ୍ଥାନାନ୍ତରେ
ପଠାଇଥାନ୍ତି ନବ-ରମଣୀକୁ
ବାହକମାନଙ୍କ କରେ ।

ଏହା ଅଟେ ପ୍ରଭୁ ପୂର୍ଣ୍ଣ ଅସମ୍ଭବ,
ବାହକ ବାନ୍ଧିବା ଘର
ସର୍ବ-ହସ୍ତେ ଥାଇ କଲେ ବା କପଟ
ସୈନ୍ୟେଣ କପଟାଗ୍ନିର ?
ପରାମର୍ଶ ସଙ୍ଗେ ସଙ୍ଗେ ପଠାଗଲା
ଯେମା ସର୍ବ ଜ୍ଞାତସାରେ,
ସଙ୍ଗେ ସଙ୍ଗେ ମଧ୍ୟ ପଳାଇ ଆସନ୍ତେ
ଯୁଦ୍ଧ କଲୁଁ ବିରୂପାରେ ।
ସବାଶ୍ୱର ପଥ ହେଲା ଏକ ଢଗ,
ଅନ୍ୟ ଢଗ ଆମ୍ଭ ପଥ,
ଏଥି ନାହିଁ ମିଥ୍ୟା କରାୟୁଧ ସ୍ପର୍ଶି
କରୁଛୁଁ ସର୍ବେ ଶପଥ ।"
ନିର୍ମଳ ଦିଶିଲା ହୃଦୟ-ଆକାଶ
ବିଶ୍ୱାସଯୋଗ୍ୟ ପ୍ରମାଣେ,
ନରପତିଙ୍କ ର ସନ୍ଦେହ-ଅନ୍ଧାର
କାହିଁ ଗଲା ସେହି ଜାଣେ ।
ବିଚାରିଲେ ନୃପ 'ହରନ୍ତି କେ କନ୍ୟା
ସବାଶ୍ୱ-ବାହକେ ମାରି,
କୋହିଲେ କି କେବେ ନ ଆସନ୍ତା ସେହି
କପଟ-ବେଶୀ ସବାଶ୍ୱ ?

ଖୋଜାଇବା ଅଟେ ପ୍ରଧାନ କର୍ତ୍ତବ୍ୟ
ସେହି ସେନାପତିଦ୍ୱାରା,
ଆଣିଦେବ ନଷ୍ଟେ ଛଅ ମାସ ମଧ୍ୟେ
ହେବ ଯେ ମୋ ଭଗ୍ନୀ ଦାସୀ ।'

ଏପର ବଚନର ବନ୍ଧନୁ ଫିଟାଇ
ସୈନ୍ୟାଧ୍ୟକ୍ଷେ ଅଧୀଶ୍ୱର
ଆଦେଶିଲେ, 'ତୁମ୍ଭେ ମୁକ୍ତ ହେଲ ସତ୍ୟ,
ଭାର ନଅ ଗୁରୁତର ।

ଦେଲ ତ୍ରୟୋଦଶ ସପ୍ତାହ ସମୟ
ଯାଇ କର ଅନ୍ୱେଷଣ
ଆଣି ଦିଅ ବାଳା— ରତନ ନୋହିଲେ
ବରିବ ନଷ୍ଟେ ମରଣ ।'

# ଆଶଙ୍କା

ସଜଳ ସପନେ        ଶାଳତରୁ ମୂଳେ
ପ୍ରସ୍ତର ଉପରେ ବସି,
ପାଗଳିନୀ ପରି        ଲସ ଗଣ୍ଡ ଲୁଏ
ନାସ୍ତି ନି ଦଣ-ବସ୍ତୁସୀ ।

ମଳିନ ବସନ—        ପରିହିତା ବାଳା
ଜ୍ୟୋତି ଝଣେ ବସ୍ତ୍ର ଭେଦି,
ଅନଳ ଢାଙ୍କିବା        ଅସମ୍ଭବ ପରି
ଢଥିଲ ବସନ ଖେଦ ।

ମୁଖ-କମଳିନୀ        ଫୁଟିବା ମାତ୍ରକେ
ବିପଦ-ଅନ୍ଧାର ମାଡ଼ି
ଯିବା ପରେ ପର—        ପ୍ରସ୍ତରକୁ ସ୍ପର୍ଶ
ଲାବଣ୍ୟ ଯାଉଛି ଛୁଇଁ ।

ମୁକ୍ତ କେଶ ଲମ୍ବି        ଝୁଲୁଛି ମୁଖର
ଏପାଖ ସେପାଖ ହୋଇ,
ଚନ୍ଦ୍ରାସ୍ତ ବେଳେ କି        ଲମ୍ବ କଳା ମେଘ
ଚନ୍ଦ୍ର ପାଶେ ଅଛି ଶୋଇ ?

ବିଶାଳ ଲୋଚନ ଗଣିବଣା ଏଣୀ—
ନୟନ ପରି ଝଲସି
ଜଣାଇ ଦେଉଛି ହରାଇ ସଙ୍ଗିନୀ
ପାଶେ ପାଉ ନାହିଁ ପଣି ।

କମଳ-କଳିକା— ବକ୍ଷାଙ୍କୁରେ ବାଳା—
ବସନ କଞ୍ଚୁକ ଉଠି
ପ୍ରକାଶେ, ମଦନ ଉଚ୍ଚାଟନମନ୍ତ୍ର—
ସଂପୁଟ ଅଛି ସେଉଁଠି ।

ଛନ୍ଦା ପଦାଙ୍ଗୁଳ ଧରି ପଞ୍ଚଶର
ଫନ୍ଦା ବାନ୍ଧିଅଛି ମନେ,
ଏକାବେଳେ ବେନ୍ଧି— ବିଧି ପଞ୍ଚବାଣ
ବିନ୍ଧିବ ବୋଲି ଯତନେ ।

ଗୃପସନ୍ତି ମାଳେ ଶୋଭେ ବାଳା ଗଳେ
ବିସ୍ତଜେ କଙ୍କଣ କରେ,
ବିବାହିତା ହେବୁ ରଖିଛି କି ତାକୁ ?
ସମ୍ଭବ ହୁଏ ମନରେ ।

ବାଲ୍ୟବିବାହିତା କନ୍ୟା ସେବେ ତାର
ଜଣାଯାଏ ଦେଖି କାନ୍ତି,
କ୍ଷତ୍ରିୟ କୁଳରେ ପ୍ରସୂତା ନୁହେ ସେ
ଅଟଇ ବ୍ରାହ୍ମଣୀ ଜାତି ।

ମହୀରୂହ ମୂଳେ ଥାଉଜ କଶୋଷ
ଦେଖଇ ପ୍ରକୃତ-ଶବ,
ମାୟାଜାଲଘେରା ସଂସାରର ସ୍ୱତ
ଦେଖାଏ ବନ ତରଙ୍ଗ ।

ତରୁବରେ ଛନ୍ଦ ଅଟକାଇଛନ୍ତି
ଲଟିଏ ତାହାର ବୃଦ୍ଧି,
ସଂସାର ଜଞ୍ଜାଳ ଢାଙ୍କିଲେ ଯେସନ
ଧୈର୍ଯ୍ୟରାଶି ହୁଏ ରୁଦ୍ଧ ।

ସ୍ଥାନେ ସ୍ଥାନେ ତରୁ— ଅଙ୍ଗରୁ ଲତିକା
ଖସି ପଡ଼ୁ ଲୋଟେ ତଳେ,
ଜଗତେ ଯେପରି ବନ୍ଧୁହୀନ ଜନ
ଗଡ଼ଇ କାନ୍ଦି ବିକଳେ ।

ଗୋଟିଏ ପ୍ରସୂନ ଫଳେ ପରିଣତ
ହେବା ପରେ ଆଉ ଫୁଟି
ଶୋଭଇ, ଯେସନ ସଂସାରରୁ ଆଶା
ପାରେ ନାହିଁ କେବେ ଭୁଟି ।

ନସ୍ଥିଟିଆ ଲଗୁ— ଅଟୁ ସେ ଅରଣ୍ୟ
ଶୁଭୁଛି ବିହଙ୍ଗ ସ୍ୱର,
ସଂସାରେ ମାନବ ସ୍ୱିତ ହେଲେ ବାଣୀ
ଶୁଭଇ କି ସାନ୍ତସର ?

ଖେଳି ଖେଳି ଉଡ଼ି ଯାଏ ଶୁଷ୍କ-ପତ୍ର,
ବୃକ୍ଷେ ନବ ପତ୍ର ବନ୍ଦୀ,
ନ ମରିବା ଯାଏ ଜଗତେ ଯେସନ
ମାନବ ହୁଅଇ ଛନ୍ଦ ।

ଉଡ଼ିଯାଏ କୋଷ ଛାଡ଼ି ପ୍ରଜାପତି
କରି ତାକୁ ହତଶ୍ରୀ,
ଜୀବନ ଉଡ଼ିଲେ ଭବେ ଶବ ଯଥା
ପଡ଼ଇ ହସଇ ଶିଶ୍ରୀ ।

ଫଲହୀନ ଦ୍ରୁମେ ହେକଜନ୍ତ ଶିର
ତଳେ ନୋହି ଅବନତ,
ଗର୍ବିତ ମାନବ ଊର୍ଦ୍ଧ୍ୱମୁଖା ହୋଇ
ହଦତ ଯଥା ପତିତ ।

କୃତଘ୍ନ ପକ୍ଷୀଏ ଅକର୍ମଣ୍ୟ ଭାବି
ଛାଡ଼ନ୍ତି ଶୁଷ୍କ-ତରୁ,
ବୁଢ଼ା-ହଡ଼ା ଛାଡ଼ି ଉଠନ୍ତି ଯେପରି
ପାପିଷ୍ଠ ମାନବେ ଘରୁ ।

ଫଳ-ପୁଷ୍ପେ ତୋଷି— ଥିବାରୁ ସେ ଦ୍ରୁମ
ଥିଲା ଆଶ୍ରୟର ସ୍ଥଳ,
ଏବେ ଉତାଡ଼ିତ ହେଲା, ଯଥା ବଳ—
ମଣ୍ଡଳରୁ ହୀନବଳ ।

ବାସି-ପୁଷ୍ପ ତେଜି ଯାଏ ମଧୁକର
ସରସ-କୁସୁମେ ବସେ,
ରସିକ ଯେପରି ପ୍ରଥମା ବରଜି
ନବ-ରମଣୀରେ ରସେ ।

ମନ୍ଥଫେଣା ଲମ୍ବି ପଡ଼ୁଛି ଡାଳରୁ,
ଭୁଞ୍ଜେ ନାହିଁ ମଧୁମକ୍ଷୀ,
କୃପଣ ଯେପରି ଉପବାସେ ବନ୍ଧୁ—
ସମ୍ପଦ ପାରଇ ରକ୍ଷି ।

କେତେ ଦ୍ରବ୍ୟ ଶୋଭା ଧରନ୍ତି ବିପିନ,
ନ ଦେଖେ କଣ୍ଟୋଷ୍ଣ କନ୍ଥା,
ଅକାଳ-ଚଡ଼କ ମାଡ଼ ଲଭି ହୃଦେ
ସ୍ୱାଷଣ ତାପ ବହନ୍ତି ।

ବନ୍ଦୀ ହୋଇଛନ୍ତି ସକଳ ଇନ୍ଦ୍ରିୟ
ସେହି କ୍ଲେଶାଘାତ ସ୍ଥଳେ,
ନିଜ କାର୍ଯ୍ୟ ତେଜି କ୍ଷତ ସ୍ଥାନ ସେବା
କରୁଥାନ୍ତି ଅବିରଳେ ।

ଘୂର୍ଣ୍ଣିତ ମସ୍ତକ ସ୍ଥିର ନୋହେ କ୍ଷଣେ,
ନାନାମୁଖେ ମୁଖ ତାର,
ସ୍ମରଣ କରଇ ପୂରୁବ-ବେଦନା
ମନ ମଧ୍ୟେ ବାରମ୍ବାର ।

ଭାବଇ ନବୀନା, "କାହିଁ ଗଲା ସେହି
କପଟବେଶୀ ସନ୍ୟାସୀ,
କେତେ ବା ସମୟ ଡେରି ହେଲା ମୋର
ବ୍ରାହ୍ମଣୀ ହେବାକୁ ପାରି ?
ତଥାପି ପବନ— ବେଗରେ ଆସିଲି
କାହିଁ ଲୁଚିଯିବ ବୋଲି,
ସତକୁ ସତ ସେ ଲୁଚିଗଲା କେଣେ,
ଫଳଇ ସନ୍ଦେହ-ବୋଲି ।

ସନ୍ଦେହ-ବଚନ ସିଦ୍ଧ ହୁଏ ନର
ବିପଦ ପଡ଼ିବା ବେଳେ,
ଧାଇଁଥିବ ଯେବେ ଆପଦ ଭୋଗବ,
ବିଧାତା ମାରଇ ଠେଲେ ।
ସେହି ଦଶା ଏବେ ଘଟିଲା ଜୀବନେ,
ଭୋଗିଲି ଦାରୁଣ କ୍ଲେଶ,
କେତେ ଖୋଜ ଖୋଜ ନ ପାଇଲି ତାର
ଅଶୁଭ-ଶୁଭ-ସନ୍ଦେଶ ।
ବାହୁଜ ସହିତେ କାହିଁ ଗଲେ ତାଙ୍କ
ନ ଦେଖିଲି ଚରଣାଙ୍କ,
ଭ୍ରମିଲି ଅରଣ୍ୟ ମଧ୍ୟରେ ଯେତେକ
ସରଣୀ ବୁଲିଛି ବାଙ୍କ ।

ଅନ୍ୱେଷଣ କରି ଉତ୍କଳର ସଙ୍ଗ
ପାର୍ବତ୍ୟ ପଥ, ଘାଟୀ,
ନ ପାଇ ସନ୍ଧାନ ଶେଷରେ ଦେଖିଲି
ବଙ୍ଗେଶ୍ୱର ରାଜବାଟୀ ।

ନ ଲଭିଲି ତହିଁ, ଆଶ୍ଚର୍ଯ୍ୟର କଥା,
କାହିଁ ଗଲେ ସେ ଯବନେ,
ଲୁଚାଇଲେ କାହିଁ ପ୍ରାଣସଙ୍ଗିନୀକି
ନଗର କିବା କାନନେ ।

ମୁଣ୍ଡ ବାନ୍ଧୁଥିଲି ସ୍ନେହରେ ସଜନୀ
ଗୁରୁ-କନ୍ୟା ଭଗ୍ନୀ ବୋଲି,
ଲୁଚିଗଲା କାହିଁ ସ୍ନେହମୟୀ ରାଣୀ
କେଶପାଶ ମୋର ଖୋଲି ।

ବାନ୍ଧିଦେବ ବୋଲି ଅନୁସରି ତାକୁ
ଆସିଥିଲି ବନ୍ଧୁ ବାଟ,
ଅଦୃଶ୍ୟ ହୋଇଲା ନୟନରୁ ପଥେ,
ହୃଦୟେ କରଇ ନାଟ ।

'ଅନଳ-ପ୍ରବେଶ' ସ୍ଥିର ଥିବ ସଖୀ
ସଜାଡ଼ୁଥିଲା ମୋ ଜୁଡ଼ା,
ଏହି ସମୟରେ ଯବନ ସୈନ୍ୟକେ
ଭାଙ୍ଗିଲେ ପ୍ରାସାଦ-ଚୂଡ଼ା ।

ଚୂର୍ଣ୍ଣ କରି ଦୁର୍ଗ ଊର୍ମିମାଳ ପ୍ରାୟ
ଶତ୍ରୁ-ସୈନ୍ୟ ଦଳ ଆସି,
ବନ୍ଧନୀ କଲରୁ ନ ପାରିଲା ଧନୀ
ବୈଶ୍ବାନରେ ଦେଲୁ ଝାସି ।

ଧୃତ ହେବା ମାତେ ସବାଙ୍କରେ ଭରି
ଆଣିଲେ ବାହକେ ଏଣେ,
ନ ଜାଣିଲେ ସୁବା ତାତ, ଭ୍ରାତା ତାର
କରୁଥିଲେ ରଣ ତେଣେ ।

ନ ଦେଇ ସମ୍ବାଦ ଗୋଡ଼ାଇ ଆସିଲି
ଲଭିବାକୁ ସଖୀ ସଙ୍ଗ,
ସହ ସୁବା ଯେତେ ପ୍ରହାର ପାଇଲା
ଅରି କରେ ମୋର ଅଙ୍ଗ ।

ଶତ୍ରୁ କ୍ଷତସାରେ ନ ପାରିଲି କରି
ସଜନୀ ଅନୁଧାବନ,
ଗୋପନେ ସବାଙ୍କ ପଛରେ ଧାଇଁଲି
ଅନୁକୂଳ ହେଲା ବନ ।

ଜୀବନୁଁ ଅଧିକ ପ୍ରାଣ-ସଜନୀକ
ଘେରଇ ନେବାକୁ ଅରି
ସତ୍ୟବାନ-ପ୍ରାଣ— ଘୋର-ଯମ ପଛେ
ହେଲି ସାବିତ୍ରୀଙ୍କ ପରି ।

ଏତକ ପ୍ରଭେଦ          ତାଙ୍କର ମୋହର
ଶମନ ସଙ୍ଗରେ ସତ
କଥାବାର୍ତ୍ତା ହୋଇ          ଯାଉଥିଲେ, ମାତ୍ର
ଗୋପନରେ ମୋର ଗତ ।
ସ୍ୱାମୀଙ୍କୁ ଫେରାଇ          ସାବିତ୍ରୀଙ୍କ ପାଖୁଁ
ଅନ୍ତର୍ହିତ ହେଲା କାଳ,
ମାତ୍ର ସଖୀ ସଙ୍ଗ          ଅନ୍ତର୍ହିତ ଶତ୍ରୁ
ଫଟାଇ ମୋର କପାଳ ।

# ଆଶ୍ରୟ

ମଘବା-ଆସନ          ଗିରି ମେଘାସନ—
ଶିଖରେ ମଧୂକ-ମୂଳେ
ଏକାକୀ ମାନବ          ବସିଛି କପରି
ନ ଡରି ଶ୍ୱାପଦକୁଳେ !

ଜ୍ୟୋତ୍ସ୍ନାଧୌତ ନିଶା          ମଧୂମନ୍ଦହାସୀ
ଢକାଣି ସ୍ନିଗ୍ଧ ମୂରତି
ମନ୍ତ୍ର ଡଏ ବୋଲି          ସ୍ଥିର ହୃଦୟରେ
ଶୁଣେ କି ନିର୍ଭୟମତି ?

ଗଣ୍ଡେ କର ଦେଇ          ଗୁଣି ହୁଏ କେତେ
ମନ୍ତ୍ରକୁ ମନୁଜ ମନେ,
ଧ୍ୟାନ କରେ ବୋଲି          ନ ପାରେ ସେ ଜାଣି
ଶ୍ୱାପଦ ଧାବନ୍ତି ବନେ ।

ଗହଳ ପତର          ମଧ୍ୟ ଛିଦ୍ର ଭେଦ
ଚନ୍ଦ୍ରିକା-ଗୋଲକ ପଡ଼ି,
ସ୍ୱର୍ଣ୍ଣ-ରୌପ୍ୟ-ଜସ୍ତ          ଅଙ୍ଗଭୂଷା ପରେ
ଜ୍ୱଳି ପଣ୍ଡୁ ଡଏ ଚଢ଼ି ।

ବଣଜ ମୂରତି ଧରିଥିବା ହେତୁ
ନରକୁ ଶ୍ୱାପଦେ ଡରି,
ଦନ୍ତୁଡ଼ନ୍ତି ଲମ୍ବ— ଡେଙ୍ଗ ଅଶ୍ୱତ୍ଥର
ପତର ପରସ୍ପେ ଥରି ।

ଶାର୍ଦ୍ଦୂଳ, ଭଲ୍ଲୁକ, ବରାହ, ହରିଣ
ଶଶକ, ଗଣ୍ଡାର, ଗଜ,
ମନୁଷ୍ୟର ଗନ୍ଧ ଜାଣି ଯୁବା ଲୁଚେ
ଡରନ୍ତି ଅତି ନିର୍ଲଜ୍ଜ ।

ରମ୍ୟ ମଧୁ-ପୁଷ୍ପ— ସୁବାସରେ ଅନ୍ଧ
ବୃକ୍ଷ-ପରିବାର ଅସି
ଶଶ ପଶୁ ଦେଖି ଭୟରେ ପଳାନ୍ତି
ନ ପାରି କୁସୁମ ଗ୍ରାସି ।

ନ ଜାଣଇ କନ୍ଥି ଧ୍ୟାନମଗ୍ନ ନର
ସବିତର ପଶୁ-କ୍ରୀଡ଼ା,
ଜପି ହୁଏ ମନ୍ତ୍ର "ନବାବ ଦୁଆରେ
କପରି ବା ହେବ ଛୁଡ଼ା ?

ଶିରଚ୍ଛେଦ ଆଜ୍ଞା ପହୁଞ୍ଚିବା ମାତ୍ରେ
ହେବ ନିଶ୍ଚେ ଗଲେ ଏକା,
ସାରଙ୍ଗେଶ-ପୁତା ସଙ୍ଗରେ ନ ନେଲେ
ବୁଝିବ ସିନା ମୋ ଭେକା ?

ଭ୍ରମି ଭ୍ରମି ମୁହିଁ ବାତୁଳ ପରାୟେ
ହେଲିଣି ନ ପାଇ ଖମା,
କାହିଁ ଗଲା ସେହ ନାରୀକୁଳେଶ୍ୱରୀ
ବଙ୍ଗେଶ୍ୱର ଭଗ୍ନୀ ବାମା ।

ଷୋଡ଼ଶଜଳାଦ ସପତ କଳାନ୍ତ—
ରାଜ୍ୟ ଚନ୍ଦଧରପୁର,
ସିଂହଭୂମ, ଧଳ— ଭୂମ ଆଦ ପଞ୍ଚ—
ଭୂମାନ୍ତ, ମେଦନୀପୁର,

ଉତ୍ତର-କୋଶଳ ସବ ଗଡ଼ଜାତ
ବନ ଗ୍ରାମ ରାଜବାଟୀ
ତନ୍ନ ତନ୍ନ କର ଖୋଜ ନ ପାଇଲି
ରମଣୀ ଆଶ୍ରମ୍ଭ-ବାଟୀ ।

ଦୂରେ ଥାଉ ବାଳା ନ ପାଇଲି ତାର
ସଂବାଦର ଲବ ମାତ୍ରା,
ଜମଦଗ୍ନାଶ୍ରମ ବାହକେ ବ କେଉଁ
ମହାପଥେ କଲେ ଯାତ୍ରା !

ତାହାର ଅଯୋଧ୍ୟା ଖୋଜାଇଲି ଚର—
ଜୀବନ ସଖାଙ୍କୁ ପେଷି,
ତହିଁ ନ ମିଳଲ ଯୁବତୀର ଚକ୍ଷୁ
କାହିଁ ଗଲା ଦୀର୍ଘକେଶୀ !

ତପସ୍ୱୀ ଆଶ୍ରମ ସନ୍ନ୍ୟାସୀ ବେଶରେ
ଅନ୍ୱେଷି କନଷ୍ଠ ଭ୍ରାତା,
ନ ଲଭିଲ ଭେଟ କଞ୍ଜବଦନାର
ହେଲା କେ ବା ତାର ହାତା !

କନ୍ଧ କୋହ୍ଲ ଭୂୟାଁ ସାନ୍ତାଳ ଶବର
ଜୁଆଙ୍ଗମାନଙ୍କ ଘର
ବୁଲି ଆସିଲା ମୋ ଜ୍ୟେଷ୍ଠାତ୍ମଜ ଯାଇ
ନ ଭେଟିଲ ସମାଚାର ।

ଶୁଣିଅଛୁ ଆଜ ମାଝୀଙ୍କ ଠାରୁ ମୁଖୁ
ଡକାୟତଦଳ ଆସି,
ଲୁଟି କରୁଛନ୍ତି ଗ୍ରାମେ ଗ୍ରାମେ ପଶି
ଅସ୍ତ୍ର-ଶସ୍ତ୍ର-ବଳେ ହାସି ।

ଅସ୍ତ୍ର-ଶସ୍ତ୍ର-ବଳ ଡକାୟତ ଯେତେବ
ଅଛନ୍ତି ଏ ଗଡ଼ଜାତେ,
ନେଇ ପାରଥାନ୍ତି ନାଗିକୁ ଗ୍ରେପ୍ତାର
ବାହକେ ମାର୍ ନର୍ଘାତେ ।

ଏହି ପଥେ ସେ ତ ଆସିବାର କଥା
ଶୁଣି ଦ୍ୱିକ ମାନଙ୍କର
ଦାସପୁର ଘାଟୀ ବାଟ ଶିକ୍ଷା ଦେଲା,
ଘଟିଛୁ କଥା ବଢନ୍ତ ।

ସମ୍ଭବ ଏ ପଥେ ସ୍ୱୈର ଯାଇଅଛୁ
ଛଦ୍ମବେଶୀ ରୂପବତୀ,
ମିଳିପାରେ ଯେବେ ଅନ୍ୱେଷିବ ଯାଇ
ଝଣ୍ଡଦଳପତି କତି ।

କାହିଁ ବା ଲଭିବ ଖଣ୍ଡ ଦରଶନ
ବଦଳ ଦେଇ ଜୀବନ,
ଧିକ ନାରୀ ଲାଭ, ଜୀବନୁଁ କି କେବେ
ଅଧିକ ରମା-ରତନ ?

ନ ହେଲା ପଛକେ କୃତଜ୍ଞର କାର୍ଯ୍ୟ,
ନ କରି ଖଣ୍ଡ ଦର୍ଶନ,
ନ ଭାବନ୍ତୁ ଯେହୁ କି ଅମୂଲ୍ୟ ଅଟଇ
ମନୁଷ୍ୟର ଏ ଜୀବନ ।

ଦାସତ୍ୱ-ଶୃଙ୍ଖଳେ ବନ୍ଧା ଥିଲି ବୋଲି
କୃତଜ୍ଞତା ମାତ୍ର ଯାହା
ନୃପ ଉପକାର କରିବ, ତାଠାରୁ
ହୀନ କି ଜୀବନ ଆସ୍ଥା !

କପର୍ଦ୍ଦକ ଲାଭ ନ ହେଉ ପଛକେ
ନରହତ୍ୟା-ପାପ ଭୋଗ
କରିବାକୁ ତଳେ ନ ହୁଏ କୁଣ୍ଠିତ
ପାଇଲେ ଖଣ୍ଡ ସୁଯୋଗ;

ଦୟା ଧର୍ମ ସ୍ପର୍ଶ କରି ନାହିଁ ଯେହୁ
ବିବେକବିହୀନ ଜନେ,
ଶତ ନରହତ୍ୟା କରି ପାରନ୍ତି ସେ
ନ ଭାବି କିଞ୍ଚିତ ମନେ ।

ଗୋପନେ କରନ୍ତି ନ ପଡ଼ିବେ ଧରା
ମାନବ-ଜଗତେ ଭାବି
ହୃଦେ ବିରାଜିତ ପରମାତ୍ମା ମଧ୍ୟ
କରୁଥିଲେ ମନା ରାବି ।

ସକଳ ଦେଖନ୍ତି ପରମ ଈଶ୍ୱର
ସର୍ବତ୍ର ବିରାଜମାନ
ଜାଣି ଶୁଣି ଦୁଷ୍ଟ ଉତ୍କାମ୍ଭିତ କରେ
ଲୁଣ୍ଠଇ ମାନବ-ଦାନ ।

ଏପରି ନିଷ୍ଠୁର ଦୁର୍ଜ୍ଜନ ବରଣ
କରିବି ମୁଁ ହୋଇ ନର
ନବାବର ସ୍ଥିର ଆଦେଶ ପାଳନେ
ପୁରସ୍କାର ବଞ୍ଚନର ।

ଲୋଡ଼ା ନାହିଁ ମୋର ସେନାନୀ ପଦଟା
ବଙ୍ଗେଶ ଦୁଆରେ ଆଉ,
ଶକ୍ତି ଥିଲେ ଯାହିଁ ସମ୍ମାନ ଲଭିବ
ପୂର୍ବ ପଦ ଗଲେ ଯାଉ ।"

ଏପରି ବର୍ତ୍ତରି ବଙ୍ଗସେନାପତି
ଯାତ୍ରା କଲା ଦୃଢ଼ ମନେ,
ଅନ୍ୟତ ନବାବ ଅବା ଦଲ୍ଲୀଶ୍ୱରେ
ତୋଷିବ ଅତି ଯତନେ ।

କାର୍ଯ୍ୟେ ତୋଷ କରି ସେନାନୀ ହୋଇବ
କ୍ରମେ ନିଜ ଶକ୍ତି ବଳେ,
କ୍ଷୁଦ୍ର ହୋଇ ପଶି ପରିଣତ ହେବ
ବିଶାଳ ସମ୍ରାଟ ଶାବଳେ ।

ବନ୍ଧୁ ରାଜ୍ୟ ଭୂମି କେତେ ବର୍ଷ ପରେ
ଦଲ୍ଲୀରେ କରି ପ୍ରବେଶ,
ଦେଖିଲା ସେ ସ୍ଥାନ ଦିବ୍ୟ ମନୋରମ
ସନ୍ତୋଷ ଦେବ ବିଶେଷ ।

ସଂବାଦ ପଠାଇ ଅନୁମତି ଆଣି
ପ୍ରବେଶିଲା ଦରବାରେ,
ଦେଖିଲା ରାଜନ୍ୟ— ବୃନ୍ଦ ଘେରିଛନ୍ତି
ସମ୍ରାଟେ ମଣ୍ଡଳାକାରେ ।

ପୃଷ୍ଠେ ଅସ୍ତ୍ରଧାରୀ ପଞ୍ଚ ସୁବଳିଷ୍ଠ
ସମ୍ରାଟ ଅଙ୍ଗ-ରକ୍ଷକ,
ପାର୍ଶ୍ୱ-ସମ୍ମୁଖରେ ପଦ୍ମପଦେ ଚନ୍ଦ୍ର
ଶଶାଙ୍କେ ଯଥା ତାରକ ।

ମନ୍ଦକୁଞ୍ଜ ପର ଅତର ସୁବାସେ
କୁସୁମ-ସୌରଭେ ମିଶି,
ରତ୍ନ-ବିଭୂଷଣେ ଦିବ୍ୟ ସିଂହାସନ
ଇନ୍ଦ୍ରାସନ ପ୍ରାୟ ଦିଶି—

ଚମକାଏ ଶତ ଟକ ଟକ ହୋଇ
ଦର୍ଶକ ଦୃଷ୍ଟି ପଡନେ,
ସେ ଦିଗେ ଗୃହିଁବ ସବଙ୍ଗ ଖଚିତ
ମଣ୍ଡର ଅଷ୍ଟ ରତନେ ।

କେତେ ପ୍ରତିମୂର୍ତ୍ତି ରତ୍ନେ ସୁସଜ୍ଜିତ
ବସିଛନ୍ତି ଭକ୍ତି ଅଙ୍ଗେ
ପୂର୍ବ ସମ୍ରାଟଙ୍କ, ଯାଉଛନ୍ତି ସେହୁ
ଚିରକାଳ କାଳ ସଙ୍ଗେ ।

ତାଙ୍କ ଛଳେ ତାଙ୍କ ଚିହ୍ନ ବସ୍ତ୍ରକର
ଦରବାର ଝକେତନେ
ଶିକ୍ଷା ଦେବା ଲାଗି ରାଜ-ନୀତି, ସେହୁ
ବସିବ ତାଙ୍କ ଆସନେ ।

ମୟୂର ଚନ୍ଦ୍ରିକା କାନ୍ଥେ ଝଟକଇ
ମଧ୍ୟରେ କୁସୁମ-ଗୁଚ୍ଛ,
ଯା ଶୋଭା ଭୁଲନେ ଜଗନ୍ନାଥ ଶିର—
ତୁଳକ୍ଷ କରିବ ତୁଚ୍ଛ ।

ଚଷ୍ଟାଣେ ପଡ଼ୁଛି ସୁରମ୍ୟ ଖରଡ଼
ବିଚିତ୍ର ଯା ନାନା ରଙ୍ଗେ,
କେଉଁ କାରିଗର କରିଛି ନିର୍ମାଣ
ଉପମା ନାହିଁ ତା ସଙ୍ଗେ ।

ପଞ୍ଚବେଶ୍ମ ପାଶ ବିଭିନ୍ନ ମଣ୍ଡଳ
ପଞ୍ଚମୂର୍ତ୍ତେ ବିରଚିତ
ଉଠାଇ ଆଣି କେ ନବ ତୃଣ କ୍ଷେତେ
ଖଞ୍ଜିଅଛି ସମ୍ଭବତ ।

ଅପୂର୍ବ ସୁଷମା ଧରିଛି ସେ ସବୁ—
ସଦନ ବିବିଧାକାରେ,
ଯା ଦେଖି ଚକିତ ହେବ ଜଡ଼ପିଣ୍ଡ,
ପ୍ରାଣୀ କଥା କେ ପଶ୍ଚରେ ?

ସମ୍ରାଟ ସମୀପେ ପ୍ରଣିପାତ କରି
ଉଭା ହୋଇ ଯୋଡ଼କରେ
ଭାଷିଲା ସୁଧୀରେ ବଙ୍ଗ-ସେନାପତି
"ଆଶ୍ରୟ ଦଅ କଙ୍କରେ ।

ବଙ୍ଗ-ନବାବଙ୍କ ସୈନ୍ୟାଧ୍ୟକ୍ଷ ଥାଇ,
ରଣ କରି ବହୁ କାଳ
ଖ୍ୟାତି ଲଭିଥିଲି ସେନାପତି-ଦଳେ
ତୋଷି ସଦା ବଙ୍ଗପାଳ ।

ମନ୍ଦଭାଗ୍ୟ ବଶେ ହୋଇ ବିତାଡ଼ିତ
ବଙ୍ଗେଶ୍ୱର ଦରବାରୁ
ଆସିଅଛୁ ଏବେ ଲଭିବାକୁ କୃପା—
କଣିକା ଶ୍ରୀସ୍ୱାମୁଠାରୁ ।

ଦୟା ହେଲେ ଦାସ ଆଶ୍ରୟ ଲଭିବ
ଦଲ୍ଲୀଶ୍ୱର ବାହୁ ତଳେ,
ପ୍ରାଣ ଥିବା ଯାଏ ରୋଷୁଥିବ ସଦା
ଶ୍ରୀସ୍ୱାମୁଙ୍କୁ ବାହୁବଳେ ।"

କରୁଣାନିଧାନ ରାଜରାଜେଶ୍ୱର
ହୋଇ ଦୟାପରବଶ
ଆଦେଶିଲେ "ତୁମ୍ଭେ ସୈନିକ-ମଣ୍ଡଳେ
ନାୟକ ପଦରେ ବସ ।

ଶୁଣିଛୁ ତୁମ୍ଭର ପରାକ୍ରମ ବହୁ
ଦିବସରୁ ଲୋକ-ମୁଖେ,
ସାରଙ୍ଗ ବିଜୟ ଅଟେ ତୁମ୍ଭ ଯଶ,
ସେନାଗ୍ରେ ମହାସୁଖେ ।"

# ମନ୍ତ୍ରଣା

ଜାଠ-ଅଧିପତି ହୃଦ-ସ୍ୱର୍ଗେ ଆଜ
କୁମାରୀ କାରୁଣ୍ୟ ପଣି,
ଆଲୋକନ୍ତି ନୃପ ମରମ-ମନ୍ଦିର,
ଭରତପୁରେଶ ବସି

ଭାବନ୍ତି "ଏ କନ୍ୟା ହେବ ମୋ ନନ୍ଦନ
ବସାଇବ ହୃଦାସନେ,
ସମର୍ପିବ ଯୋଗ୍ୟ ଜାମାତା ହସ୍ତରେ,
ପାଳିବ ଅତି ଯତନେ ।

ମାତ୍ର ସେ ସୁନ୍ଦରୀ କରିଛି ଶପଥ
'ହ୍ୱନାଦିବ ସଖୀ ଥିରି'
ଏ ତ ଅସମ୍ଭବ ଦିଲ୍ଲୀଶ୍ୱରାଶ୍ରିତ
ବ୍ୟକ୍ତିକୁ ପାରିବ ଧରି !

ସାରଙ୍ଗେଶ-ପୂତା ହୋଇଅଛି ବୀର
ଦିଲ୍ଲୀଶ୍ୱର ସେନାପତି,
ତାହାକୁ ଧରିବା ବାମନକୁ ଚନ୍ଦ୍ର—
ପ୍ରାୟ ଅସମ୍ଭବ ଅଟେ ।

ଖଳ ଶଠନେତା, ହେଲି ବୋଲି ଆଜ
ବାହୁବଳେ ନରେନ୍ଦ୍ର,
ଲକ୍ଷ୍ମୀ-ସମ୍ରାଟଙ୍କୁ ଭଗାଇ ନରବ
ମୁ ଖୁବ ଜାଠ ମାତର !

ଅନ୍ୟ ପକ୍ଷେ ଯେଉଁ ବାଳିକା ଲଭିଛି
ଆଶ୍ରୟ ମୋ ସ୍ନେହାସନେ,
ତାର ବା କପର ସ୍ପର୍ଶ ନ କରିବ
ପ୍ରତିଜ୍ଞା ଥାଉ ଜୀବନେ ?

ବେନ ଶ୍ୱାବ ମଧ୍ୟେ ଅଟେ ଗୁରୁତର
ମୁକ୍ତକେଶୀ ଦୃଢ଼ପଣ,
ହିନ୍ଦୁ ରମଣୀକୁ ନେଇଛି ଯବନ
ଶ୍ରବଣୁଁ ଶ୍ରେୟ ମରଣ ।

ଆର୍ଯ୍ୟ ହୋଇ ଯେବେ ଆର୍ଯ୍ୟନାରୀ-ସ୍ୱେରେ
ନ ଦେଏଁ ଉଚିତ ଦଣ୍ଡ,
ଜୀବନଧାରଣେ ଅଛି କେଉଁ ଲାଭ ?
ଶ୍ରେୟ ହେବା ଶତଖଣ୍ଡ ।

ଜାଣିବ ଯେବେ ତ ଶଶିକଳା ଶତ୍ରୁ
ରଖିବ ଅକ୍ଷୟ ଯଶ,
ରଣେ ମଲେ ମଧ୍ୟ ହିନ୍ଦୁନାରୀ-ହିତେ,
ପ୍ରଶଂସା ଲାଭ ଅବଶ୍ୟ ।

ବ୍ରାହ୍ମଣ-କୁମାରୀ ଓଜସ୍ୱିନୀ ବାଣୀ
ଉଦ୍ଗାରଇ ଯେଉଁ କାର୍ଯ୍ୟେ,
କ୍ଷତ୍ରିୟ ହୋଇ ମୁଁ ନ କଲେ ସେ କର୍ମ
କି ବୋଲିବେ ସର୍ବ ଆର୍ଯ୍ୟେ ?

କାହିଁ ସେ ଉତ୍କଳ— ଗରଭେ ଯାରଙ୍କ
କାହିଁ ଏ ଭରତପୁର,
ଏତେ ଦୂର ଦ୍ୱିଜ— କନ୍ୟା ଆସିଅଛି
ପ୍ରତିଜ୍ଞା କରି ଭଦୁର ।

କ୍ଷତ୍ରିୟର ଧର୍ମ ପାଳିବାକୁ ପଣ
କରିଅଛି ହିନ୍ଦୁ ହିତେ,
ତା ଠାରୁ ତ ହୀନ ହେବି ନ ଯୁଝିଲେ
ଯାରଙ୍ଗ-ଜେତା ସହିତେ ।

ମୁକ୍ତକେଶୀ ଅସ୍ତ୍ର ଧରିବ ଯବନ
ବିପକ୍ଷେ ସମରାଙ୍ଗନେ,
ନରେଶ ହୋଇ ମୁଁ ପଛଘୁଞ୍ଚା ଦେଲେ
ହସିବେ ନାହିଁ କି ଜନେ ?"

ଏପରି ବକ୍ତୃର ଡକାଇଲେ ନୃପ
ଅମାତ୍ୟ ସେନାନାୟକେ
ଅତି ଦ୍ରୁତଗତି ପ୍ରହରୀ ପଠାଇ
ନିକଟେ କ୍ଷଣ ମାତ୍ରକେ ।

ପ୍ରବେଶିଣ ପାଶେ ସଚିବ ସେନାନୀ
ପ୍ରଣମିଲେ ବଦ୍ଧକରେ,
ଯଥାବିଧି ପ୍ରତି— ପ୍ରଣାମ ପ୍ରଦାନେ
ବସାଇଲେ ନୃପ ଖରେ ।

ଆଦ୍ୟେ ପ୍ରାଥମିକ ଆଳାପ ସମ୍ଭାଷ
ହୋଇଗଲା ବହୁ ବେଳ,
ପରେ କଥାଛଳେ ପୁଚ୍ଛିଲେ ରାଜନ
"ଖେଳିବା କି ଗୋଟେ ଖେଳ ?

ସମ୍ମୁଦ୍ ଅମୀର ନବ ସେନାପତି
ଦିଲ୍ଲୀଶ୍ୱର ଦରବାରେ,
ତାହାଙ୍କୁ କପଟ ଧରିବା ସମରେ
ମୁକ୍ତକେଶୀ ଉପକାରେ ?"

ତଳକୁ ଟିକଏ ମଥା ପୋତି ମନ୍ତ୍ରୀ
ହସିଲେ ସୁଧୀର ସ୍ୱରେ
"ଦିଲ୍ଲୀଶ୍ୱର ସଙ୍ଗେ ପାରିଲେ ତ ଯଶ
ରଖିବା ଏ ତସ୍ୱତରେ ।"

କିଛି କ୍ଷଣ ପରେ ରଜପୁତ ବୀର
ଜାଠେଣ-ସେନାନାୟକ
"ପ୍ରତିହିଂସା ନେବା କ୍ଷତ୍ରିୟର କାର୍ଯ୍ୟ"
ହସିଲେ ଲଭି ପୁଲକ ।

ଯେଣ୍ଟା ବ୍ୟବସାୟ ଅନୁରୂପେ କଥା
କହନ୍ତେ ଉଭୟ ସାର,
ଏକର ମନ୍ତ୍ରଣା ସଠିକ ଉଚିତ,
ଅନ୍ୟର ଛନ୍ଦିୟ ଗୀର ।

ବନ୍ଧ ଯିବା ହେବେ ପ୍ରଳୟ କରିବ
ନଦୀ ତାହ୍ନୁଁ ହାବବ ତା.
ଜଳ ଯୋଗାଇବା ବ୍ୟବସାୟ ତାର,
ପ୍ରାଣୀ ହୁଚେ ସଦା ରତା ।

ଅବଶେଷେ ନୃପ ରାଜନ ଉଚିତ
ବାକ୍ୟ ଭାଷି ବେନି ଜନେ
ସନ୍ତୋଷିଲେ ହିଜ ପ୍ରତିଭା ବଳରେ
"ଜଣିବା ମୃଦୁ-ଗମନେ ।

ଏକାଟିବେଳେ ରଣ— ଯାନା କରି ଯିବା
ବାସ୍ତବକ ଅସମ୍ଭବ,
ତାରପାଖୁଁ ଖଣ୍ଡେ ଖଣ୍ଡେ ଲୁଟି କଲେ
ସହଜେ ହେବ ସମ୍ଭବ ।

ପ୍ରାନ୍ତସ୍ଥିତ ରାଜ୍ୟ ଧ୍ୱଂସ କରି ଧନ
ସମ୍ପଦ ଆଣିଲେ ବହୁ
ବଳେ ଦନ୍ତୀଶ୍ୱର ଶାନ୍ତିରକ୍ଷା ଆଶେ
ସୈନ୍ୟାଧ୍ୟକ୍ଷେ ଦେବ କହୁ ।

ତେବେ ହେଲେ ଧନ୍ୟ          ପଣ୍ଡିତ ସାରଙ୍ଗ—
ଗଡ଼େଶ୍ୱର-ସୁତା-ଚୋର,
ମୁକ୍ତକେଶୀ କେଶ          ବନ୍ଧାଯିବ ଯେବେ
ସଂଗ୍ରାମ କରିବା ଘୋର ।"

କଲେ ସମର୍ଥନ          ବାଧ୍ୟ ହୋଇ ବେନ
ପରିଷଦ ନୃପ ବାକ୍ୟେ ,
ଦେଖା ନାହିଁ କେବେ          ମାନବ ଜଗତେ
ନ ମାନେ ବଡ଼ କଥା କେ ।

ମନ୍ତ୍ରଣା ଉତ୍ସବେ          ବୀର ଜାଠପତି
ଆଦେଶିଲେ ପାର୍ଶ୍ୱଚରେ
"ଦ୍ୱିଜକନ୍ୟା ମୁକ୍ତ—          କେଶୀକୁ ନିକଟେ
ଆସିବାକୁ କହ ଶରେ ।"

ଆଜ୍ଞା ମାନେ ଭୃତ୍ୟ          ତରତରେ ଯାଇ
. ବ୍ରାହ୍ମଣ-କନ୍ୟା ସମୀପ,
ଜଣାଇଲା "ଦେବି,          ଅବଧାନ ହେଉ
ଡକାଉଛନ୍ତି ଅଧିପ ।

ମନ୍ତ୍ରୀ ସେନାପତି          ଗହଣେ ଅଛନ୍ତି
ଶ୍ରୀ ଛାମୁ ଦେଲେ ଆଦେଶ
ଡାକ ନେବା ଲାଗି          ଦ୍ୱିଜ-ନନ୍ଦିନୀକୁ
ଛର ମୁକ୍ତ ଯାର କେଶ ।

ସେଥିପାଇଁ ମୁହିଁ ଆସିଅଛୁ ଦେବ,
କରନ୍ତୁ ବସନମାନ
ହନୂହୃଦ୍ବୈଷିଣୀ ସ୍ୱଜଦର୍ପ ନାଶେ
ସହର ଚେଜ ଅସ୍ଥାନ ।"

ପନ୍ଥର ପ୍ରସାର କଲା ସେହ୍ୱକ୍ଷଣି
ଷୋଡ଼ଶବର୍ଷୀୟା ନାଶ,
ଯା ସ୍ୱର୍ଗୀୟ ଭାବ ଉରତପୂଟରେଣ
ହୃଦୟର ଅଧିକାଶ ।

ଚମକାଏ ତାର କମନୀୟ କାନ୍ତ
ଧୈର୍ଯ୍ୟଶାଳୀ ଜନ ଚକ୍ଷୁ,
ସୃହିଁ ନ ପାରନ୍ତ କାମୁକେ ତା ମୁଖ,
ଲଭନ୍ତ ଦଣ୍ଡ ଉଚିତ ।

ଦୃଷ୍ଟିବାୟୁ ପର ଘୂରେ ତା ମସ୍ତକ,
ନ ହୁଏ ସ୍ଥିର ତା ଚକ୍ଷୁ,
ହୃଦୟ-ଭଣ୍ଡାର କରନ୍ତୁ ଯେ କେତେ
ଅମୂଲ୍ୟ ଭାବ ସଞ୍ଚିତ ।

ଭାବୁଅଛୁ "କାହିଁ ସ୍ନେହମୟୀ ଶଶୀ
ପାଇବ ପୁଣି ଏ ପ୍ରାଣେ,
ବୈରଶୋଧ ଅବା ସାଧିବ ଯବନେ,
ତାର ତ ଚକ୍ଷୁ ନ ଜାଣେ ।

ଯବନ ବା କାହ୍ନୁଁ　　　ଜାଣିବ ତା ଚିହ୍ନ
　　ଲୁଚିଲି ସେ ବ୍ରାହ୍ମୀ କୂଳେ,
ଶିରଚ୍ଛେଦ ଭୟେ　　　ସମ୍ରାଟେ ଶରଣ
　　ପଶିଲି ହୃଦ ବ୍ୟାକୁଳେ ।"

ପୁଣି ଭାବେ କେବେ,　　"ସତେ କି ସଜନୀ
　　ଲିଭିଗଲା ବ୍ରାହ୍ମୀ-ଜଳେ,
ସତୀତ୍ୱ-ହରଣ　　　ଆଶଙ୍କାରେ କୋଳେ
　　ଆଶ୍ରିଲେ କବା କମଳେ ।"

ଭାବଇ କେବେ ବା,　　"ସଖୀ ଯେବେ ଗଲା
　　ମୁଁ ଥାଇ କରିବ କଣ ?
ଚିରକାଲ ପାଇଁ　　　ପରାଣ ତେଜିବା
　　ଶ୍ରେୟସ୍କର ଭକ୍ଷି ବିଷ ।"

ଚିନ୍ତଇ ମଧ୍ୟ　　　"ପ୍ରାଣ ବିନାଶିବା
　　ଅନ୍ୟ ପକ୍ଷେ ଅନୁଚିତ,
ଶତ୍ରୁ ସଂହାରଣ　　　ଉଦ୍ୟରେ ମରଣ
　　କାଳକୁ କୀର୍ତ୍ତି ସଞ୍ଚିତ ।

ସଂସାର ଘୋଷିବ　　　ଅରି ମାରିଅଛି
　　ସଜନୀ ହସ୍ତରେ ଯେବେ,
ବୈରି-ନିର୍ଯ୍ୟାତନ　　　ପରେ ପ୍ରାଣବଳି
　　ଦେବା ମୋ କର୍ତ୍ତବ୍ୟ ତେବେ ।

ରଜତ ପ୍ରବାହ ବହୁଥିଲା ଯଥା
ସାଗରଙ୍କୁ ସ୍ୱରୂପା ଯାଏ,
ଉପାଇବ ତଥା ଯବନ-ମଣ୍ଡଳ
ରକ୍ତ-ନଦେ ଠାଏ ଠାଏ ।"

କରଇ ହୁଙ୍କାର କେବେ ମୁକ୍ତକେଶା
"ସଖୀ ଶବ୍ଦୁ ଧ୍ୱଂସି ପରେ
ବଞ୍ଚିଥିଲେ ସିନା ସଖୀ ଅନ୍ୱେଷିବ
ଯେବେ ସେ ଥିବ ଜୀବରେ ।"

ଏହାପରେ କେତେ ଭାବ ଭାବ ଶେଷେ
ପ୍ରବେଶିଲା ଦରବାରେ,
ଛନ ଛନ ମନ ଚଞ୍ଚଳ ନୟନ
ଛିଲେ ଦଣ୍ଡେ ତାହାଠାରେ ।

ବସାଇଲେ ମାଣ ଆସନେ ସ୍ୱଜନ
ବ୍ରାହ୍ମଣ-ନନ୍ଦନୀ ଯୋଗେ,
ଅସ୍ୱୀକୃତା ପୁଣି ନ ଜାଣିଲେ ଶତ୍ରୁ
ନ ରହୁବ ଏଥି ହେତେ ।

ଧନ୍ୟ ତା ପ୍ରତିଜ୍ଞା, କ ବୋଲି ତାହାଙ୍କୁ
ସମ୍ବୋଧିବା ଆବଶ୍ୟକ
ଦେବୀ ଅବା ନାରୀ କେଉଁ ସମ୍ବୋଧନେ
ହେବନ୍ତ ଜାଠ-ନାୟକ ।

## ଲୁଣ୍ଠନ

ବଙ୍ଗୋପସାଗରେ ପଡ଼ୁଛି ଚଞ୍ଚଳ
ପ୍ରତ୍ୟହ 'ଜାହାଜବୁଡ଼ା',
ଅଜ ରଣତରୀ, କାଲି ଦ୍ରବ୍ୟପୋତ
ହେଉଛନ୍ତି ପଥହୁଡ଼ା ।

ଧ୍ୱସ୍ତ ହେଉଛି କେ, ଲୁଟି ହେଉଅଛି
କେ ତସ୍କରୁ ଦ୍ରବ୍ୟରାଜ,
କେବଳ ତରଣୀ ଖରକାଳ ସିନ୍ଧୁ—
ଗରଭେ ରହଇ ସଜ ।

ଜର ରହିଲେଣି ଦୂରଦେଶିଗଣ
ବଣିଜ ବେଉସା ଗୁଢ଼,
ଧ୍ୱଂସି ଦେଲଣି କେ ବଙ୍ଗୋପସାଗର
ବଙ୍କ ସ୍ଥଳଘର ମାଢ଼ ।

ଚଟ୍ଟଗ୍ରାମୁ ଗଣା ଆରମ୍ଭିଲେ ଯେତେ
ବନ୍ଦର ବଙ୍ଗ-ସାଗରେ,
କାବେରୀ ମୁହାଣ ଯାଏ ସଙ୍କ ତୂର
ଜରଇ କେ ଯୋରତରେ ।

ନର-ଲୁଟି କାହିଁ କେହ ଶୁଣି ନାହିଁ,
କରଇ ସମ୍ପଦ ଜୁର,
ଅସ୍ତ୍ର-ଶସ୍ତ୍ରେ ନାପି କିଅବା ବଳାଣି
ଦ୍ରବ୍ୟ ନେଇ ହୁଏ ଦୂର ।

ଅଦ୍ଭୁତ ଜାହାଜ ସାହାଯ୍ୟରେ ସଦା
କରନ୍ତେ ଘୋର ଉତ୍ପାତ,
ଜଳଯାତ୍ରୀଙ୍କର ହୃଦୟରେ ହୁଏ
ଭୀଷଣ ଆତଙ୍କ ଜାତ ।

ପାରାବାର-ବକ୍ଷେ, ତଟିନୀ-ମୁହାଣେ
ଅବା ସିନ୍ଧୁ-ଉପକୂଳେ,
ରକ୍ଷା ନାହିଁ କାହିଁ ହୁଅନ୍ତି ବିନଷ୍ଟ
ତରଣୀଗଣ ସମୂଳେ ।

ସ୍ୱପମାନ କିବା ଜଳଗର୍ଭଗୃହୀ
ପୋତମାଳ ତା କବଳେ
ପଡ଼ନ୍ତି ପ୍ରତ୍ୟହ ହୋଇ ନିରୁପାୟ
ପଳାଇ ନ ପାରି ବଳେ ।

ଏକାବେଳେ ଶୂର ପାଖରୁ ଆଜମି
ପଞ୍ଚାଏ ରଣତରଣୀ,
ଦେଖାଇ ଦଅନ୍ତି ଏକୁଟିଆ ପୋତେ
କାଳକୁ ମହା-ସରଣୀ ।

କମାଣ ଗୁଳାରେ ଫଟାଇ ତାହାଙ୍କୁ
ପାଶ୍ୱବାରେ ଦେଇ ମାଡ଼,
ମୂଲ୍ୟବାନ ଦ୍ରବ୍ୟ କାଢ଼ି ନେଇଯାନ୍ତି
ଅପର ପଦାର୍ଥ ଛାଡ଼ି ।

ଭିନ୍ନ ଭିନ୍ନ ବେଶ ଧରିଥାଆନ୍ତି ସେ
ଡକାୟତ ତସ୍କରଗଣେ,
କି ଉଦ୍ଦେଶ୍ୟ ରଖି ତାହାଙ୍କୁ ଗୋଚର
କି ଜାଣିବ ଅନ୍ୟ ଜଣେ ।

ଯାତ୍ରିଗଣେ ମାରି ପକାଇ ଦେବାରୁ
ସାଗର-ତରଙ୍ଗ-ଅଙ୍ଗେ
କେବେ ନିମ୍ନେ, କେବେ ଊର୍ଦ୍ଧ୍ୱେ ଶବରାଶି
ସନ୍ତରନ୍ତି ନାନା ରଙ୍ଗେ ।

କେତେ ଧନ ହେଲା ସକଳ ଅପେକ୍ଷା
ସ୍ଥଳେ ଘୋର ଅତ୍ୟାଚାର,
କାଳୀଘାଟ ଠାରୁ ଉତ୍ତରକୁ କ୍ରମେ
ଉତ୍ପାତ ଭୀଷଣାକାର ।

ଯବନାଧିକୃତ ପ୍ରଦେଶରେ ଏବେ
ଡକାୟତ ଭୀତି ଗୁରୁ,
ଆଜି ଏହି ଗ୍ରାମ, କାଲି ଅନ୍ୟ ଗ୍ରାମ
ଲୁଟଇ କେ ଆସି ଦୂରୁଁ ।

କେବଳ ଯେ ଧନ ସମ୍ପଦର ଲୁଟ
କରନ୍ତି ସେ ତାହା ନୁହେଁ,
ବାଧା ଦେବା ବ୍ୟକ୍ତି ମୁହୂର୍ତ୍ତ ମଧ୍ୟରେ
ମରଣ ମୁଖକୁ ମୁହେଁ ।

ଅସ୍ତ୍ର ଶସ୍ତ୍ର ଦେଖ— ବଧ ଉପଯୁକ୍ତ
ଅଛି ସେ ଦୁଷ୍ଟଙ୍କ ପାଶେ,
ଯେତେବେଳେ ଯାହା ଲୋଡ଼ା ତା ପ୍ରୟୋଗ
କରନ୍ତି ଶତ୍ରୁ ବିନାଶେ ।

ପ୍ରତିବନ୍ଧକ ତ ବନ୍ଧୁକ ନ ପଡ଼େ
ଗ୍ରାମବାସୀ ଭୟେ ଥର
କଏ କେଉଁ ସ୍ଥାନେ ଆତ୍ମରକ୍ଷା ଲାଗି
ଲୁଚନ୍ତି ମରଣେ ଡର ।

ଦଳକେତେ ନୁହେଁ ବନ୍ଧୁକର ଅଣ୍ଟ—
ଆଗ୍ନେୟ ସୈନିକ ଆସି
ଲୁହପାଶେ ଘେରି ଯାଆନ୍ତି ଗ୍ରାମର
ରଜନୀରେ ଗଣି ଗଣି ।

ଦୂର ଦୂର ଗଣ୍ଡା ବନ୍ଦୁକ ଶବଦ
ସଂକେତ ଦିଅନ୍ତି ଆଗେ,
ସଙ୍ଗେ ସଙ୍ଗେ ଦୁଷ୍ଟ ମଧ୍ୟେ ପ୍ରବେଶନ୍ତି
ଚରଣରେ ଅଣ୍ଟଚ୍ୟାଗେ ।

ଏହିପରି ପ୍ରଭ— ଉତ୍ସବେ ହେବାରୁ
ଦେଶବ୍ୟାପୀ ସର୍ବ ଜନେ
'ଖଣ୍ଡା ଆଗମନ' ସଂକେତ ପାଇଲେ
ରଖନ୍ତି ପ୍ରାଣ ଗୋପନେ ।

ବୈଦ୍ୟୁତିକାଲୋକ ଧରି ରକ୍ଷିଥାନ୍ତି
ଜଣକେତେ ବାମ କରେ,
ଶବଶୂନ୍ୟ ସର୍ବ— ସ୍ଥାନ ଖୋଜ ଦାମୀ—
ଦରବ ନଥନ୍ତି ଘରେ ।

ଉନ୍ମନେ ଅବା ଗାଢ଼ ନିଦ୍ରା ଯୋଗେ
ବୁଜିଥାଇ ଯେ ନୟନ,
ଖଣ୍ଡ ତରୁଣୀରୁ ଯାଏ ନାହିଁ ତାର
ଅମୂଲ୍ୟ ଦ୍ରବ୍ୟ ଜୀବନ ।

କ୍ରମେ ସ୍ୱଳୁତର ହେଲା ତତାହୃତ
ମୁସଲମାନ ପ୍ରଦେଶେ,
ପଲ୍ଲୀ ବା ନଗର ଅବା ନଦୀ-ଗର୍ଭ—
ତଲ୍ଲ ମଧ୍ୟୁଁ ଲୁଣ୍ଠିଲେ ସେ ।

ଯୋଦ୍ଧୃବେଶ ତାଙ୍କ ଅଙ୍ଗେ ଦସାନର
ଜଗାଲେ ହି-ଉତ୍ସଗାର,
ସର୍ବେ ସର୍ବକାଳ ବଳିଷ୍ଠ ସୁବ୍ରତ
ଶକ୍ତିଉପାସକାକାର ।

ସୁ-ସୂକ୍ଷ୍ମ ସିନ୍ଦୂର— ରେଖା ଶୋଭେ ଭୂରୁ—
ମଧ୍ୟରୁ ପଗଡ଼ି ଯାଏ,
ଏଥୁଁ ଅନୁମିତ ଛତ୍ରିୟ ସନ୍ତାନ,
ହିତାର୍ଥେ ରତ ସେନା ଏ ।

ଦେଶ କାର୍ଯ୍ୟ ଅବା ଧରମ ରକ୍ଷଣ
କି ଅବା ଧରଣୀ ସେବା
ଜଣ୍ଢାଏ କେ ସାଧୁ କ୍ଷତ୍ରିୟ ସାହାଯ୍ୟେ
ଶିଖାଇ ରୁଦ୍ରାଣୀ ସେବା ।

କେଉଁ ସ୍ଥାନେ ତାଙ୍କ କର୍ତ୍ତବ୍ୟର ପୀଠ
ସ୍ଥଳୀ ଅଛି, ତାହା କିଏ
ପତ୍ତ୍ୟଳ ପାରବ, ପ୍ରାଣାନ୍ତଙ୍କ ବେଳେ
ପରିଚୟ କେବା ଦିଏ ?

ତୀକ୍ଷ୍ଣ ଦୃଷ୍ଟି ଖରେ ବୁଲାଇ ସେ ଦୃଷ୍ଟି
ଦେଖନ୍ତି କେଉଁଠି କିଏ,
କିଏ କେଉଁ ଘରେ କିଛୁ ନ ଦେଖିଲେ
ବାମ ହାତେ ମୋଢ଼େ ଜଣ ।

ବଉଣାରେ କେହ୍ନ ସାହସୀ ପୁରୁଷ
ଚେଇଁ ଶୋଇଥିବା ଘଡ
ଦସ୍ତାଖାର ଖଣ୍ଡେ ଉଠାଇ ମାଗନ୍ତି
"ଦିଅ ତୋ ବାକସ ଗୃହ ।

ବୃଥାରେ କାହିଁକି		ସିନ୍ଦୁକ ଘଞ୍ଚିବା
ଅର୍ଥରେ ଆମ୍ଭର ଦାବ,
ପୋତା ମାଲ କାହିଁ ?		କ ରଖିଛୁ କହ ?"
ଖଣ୍ଡେ ଅଛୁ କରୁଣା ବ ।

କଏ ବା କାହିଁକି		ଚକ୍ଷୁ ମେଲାଇବ
ମହାନନ୍ଦ୍ୟାଗତ ପବ୍
'ଯିବ କ ରହିବ		ଅମୂଲ୍ୟ ଜୀବନ'
ପଡ଼ୁଥାଏ ସଦା ସ୍ୱର ।

ହାଲାଇ ଦଥଇ		ଜା ଶଯ୍ୟର କେହି
"ଉଠ ରେ !" ବଚନ ଭାଷି
ଧର୍ମପ୍ରାଣ ସାବ		କ୍ଷତ୍ରିୟପ୍ରବର
ଗାମ୍ଭୀର୍ଯ୍ୟ ଦର୍ଶନେ ହାସି ।

କହଇଏ ଭାଗ୍ୟେ		ସତ୍ୟ କଥା ସ୍ୱାରୁ
ଧନ ରକ୍ଷିବାର ସ୍ଥାନ,
ପ୍ରକୃତରେ ପ୍ରାଣୀ		ପ୍ରାଣ ଯିବାବେଳେ
ନ କରେ ମିଥ୍ୟାନୁମାନ ।

ନେଇ ଯାଇ ସବ		ମୁହୂର୍ତ୍ତି ମଧ୍ୟରେ
ଗୁଲଯାନ୍ତ କେଉଁ ସ୍ଥାନେ,
ତତ୍ପରେ ସକଳ		ଉଦ୍ଧୁ ଗୁଲଯାଏ
ନ ଥିବାରୁ ଖଣ୍ଡମାନେ ।

# ସାହସ

ଦ୍ୱାରପାଳ ଆସି          ଜାଠାଧିପ ପାଶେ
ଜଣାଇଲା ଯୋଡ଼ିକରେ,
"ପ୍ରଭୁ ! ବିଦୂଷକ          ଦ୍ୱାରେ ଉପସ୍ଥିତ
ଆଦେଶ ଦଅନ୍ତୁ ଥରେ ।"

ଅନ୍ୟ କଥା କିଛୁ          ଘାରୁଥିଲେ ନୃପ
ସହସା ଫେରାଇ ମତି,
ଆଦେଶିଲେ ଦାସେ          "ସଙ୍ଗେ ଆଣି ଆସ
ପଣ୍ଡିତ ସରଳମତ ।"

ଦ୍ୱାର ଆର ପାଶେ          ଶୁଣୁଥିଲେ ସେହୁ
ଅତି ସୁରସିକ ଜଣ,
ଛାତି ଫୁଲିଗଲେ          ବିଶେଷଣ ଶୁଣି
ଭାବିଲା ପଢ଼ିବ ସ୍ତୁତି—

"ମୋହ ବିଶେଷଣ          କରୁ ସମ୍ଭାଷଣ
ବସାଇ ସୁନାସନେ,
ଅନାଦର କାହିଁ          ଭଜଇ ସେବକ
ପଣ୍ଡିତ-ଜନ-ବ୍ରାହ୍ମଣେ ।

କବି ଦେଖି ଯେବେ ସ୍ତବ ନ ପଢ଼ିଲ
ଶ୍ରୀମୁଖୁଁ ବଚନାଦେଶ
'ଉଦର ପୂରଣ ସାମଗ୍ରୀ ଆଣ'
ସେ ଥିବା କେଉଁ ନରେଶ ?

ରଖେ ଯେ ଅକ୍ଷୟ ଜୀବନ୍ତ ସଂସାରେ
କାଳକୁ ଅକ୍ଷୟାକ୍ଷରେ,
ତା ଉଦରଜ୍ୱାଳା ନ ବୁଝିଲେ ନୃପ
ଯୋଗ୍ୟ କି ପ୍ରଭୁପଣରେ ?

'ଅଶେଷ ପ୍ରକାର ଅଟେ ମୋ ଆକାର'
ଭାଗବତେ ଅଛି ବନ୍ଧ,
ମୂକବ, ପଣ୍ଡିତ ହୃଦୟେ ପୂରିତ
ଦିନେ ପ୍ରଭୁ ଛନ୍ତି କହି ।

କହିଛନ୍ତି ପୁଣି ଦିନେ ଯଦୁମଣି
ପଣ୍ଡିତ କବି ପ୍ରଭେଦ
ଆକାଶ ପାତାଳ ଜାଣ ନରପାଳ
କବିତା ନିତ୍ୟ ଅଭେଦ୍ୟ ।

କଳ୍ପନା ଯାହାର ରସନାରେ ସ୍ଥିର
ସେ ଅଟେ ପରମବ୍ରହ୍ମ,
ତାହାଙ୍କୁ ନ ପୂଜ ଅଟେ ଅଧିସଜ
ମୁଖେ କହ ନମୋନ୍ନସ୍ତୁ ।"

ଶୁଣି ନରମଣି ବିଦୂଷକ ବାଣୀ
ଫଳାହାର ଅନନ୍ତରେ
ଆଦେଶିଲେ ଦାସେ ହୋଇ ବିମୋହିତ
କଳ୍ପନା-ଦାସ ପୂଜନେ ।

ନାନାବିଧ ରହସ୍ୟ ଲାଗିଲା ସେ ସ୍ଥଳେ
ନାନା ହାସ୍ୟରସ ଛଳେ
ବୃନ୍ଦାବନଠାରୁ ଗ୍ରାମଲୀଳା ଯାଏ,
ବସିଛୁ ବାଳା କଣ୍ଟଲେ ।

ଶେଷେ ଦ୍ୱିଜବର ପଚାରିଲେ ଭୂପେ
"ବିମୁକ୍ତକେଶାଟି କିଏ
ଉଚ୍ଚକୁଳୋଦ୍ଭବା ସ୍ୱଚ୍ଛ ଅବୟବା
ମଳିନମୁଖୀ ଟିକିଏ ?

ନୁହେଁ ପାଗଳିନୀ ମରାଳଗାମିନୀ
ସୁଚଞ୍ଚଳା ମନସ୍ୱିନୀ,
ଜଣାଯାଏ ଧନୀ ବିଷାଦଗାମିନୀ
ମୂର୍ତ୍ତିମନ୍ତ ସୌଦାମିନୀ ।"

ଉତ୍ତରିଲେ ବୀର ଜାଠ ଅଧୀଶ୍ୱର
ଧର୍ମପ୍ରାଣ ସତ୍ୟପାଳ,
"ଧନ୍ୟ ବିଦୂଷକ, ଧନ୍ୟ ତବ ଶକ୍ତି,
ଧନ୍ୟ ତବ ଅସମ୍ଭାଳ ।

ନ ଚିହ୍ନି ନ ଜାଣି ବାଲା ପରଚୟ
ଉଦ୍ଧାମ ବର୍ଣ୍ଣନା ତାଳ
ଦେଖାଉଛ କେତେ ସୁ-କବିତା ଛଟା
ସୁ-ହାସ୍ୟରସେ ପ୍ରକ୍ଷାଳ ।

ଅନୁମାନ ବଳେ ଜାଣିଥଲ ଯାହା
ଅବଶ୍ୟ ଅଟେ ତା ଠିକ,
ମାତ୍ର ଉଚିତ କି ଅପରିଚିତାକୁ
ବର୍ଣ୍ଣିବା ହୋଇ ନିର୍ଭୀକ ?”

ହାସ୍ୟ ଉଚ୍ଛୁଳିଲା ବିଦୂଷକ ମୁଖୁ
ଶୁଣି ନରମଣି ବାଣୀ,
ଭାଷିଲେ “ଶ୍ରୀଗୁରୁ ଅସମ୍ଭବ କଥା
କପର ଅଛନ୍ତି ଜାଣି ?

ନୁହେଁ ସୀମାବଦ୍ଧ କବିତା ପ୍ରବନ୍ଧ,
ବର୍ଣ୍ଣନୀୟ ଦ୍ରବ୍ୟ ରୂପ,
ନ ଭାବ, ଉଚଚରେ ବିଦ୍ୟୁତ ବେଗରେ
ଯେ ସ୍ଥାନେ ତା ଅଭିରୂଚି ।

କଳ୍ପନା-ସୁନ୍ଦରୀ ସଖୀ ବାଗୀଶ୍ବରୀ
ରଚନା-କର୍ତ୍ତ୍ରୀଙ୍କ ଯାର
କି ଅଟେ ଉଚିତ ଥିବା ଅନୁଚିତ
ବିଚାର ନ ଥାଏ ତାର ।

ଯେବେ ଯେଉଁ ଭାବ          କବି କରେ ଲାଭ
ହୁଅଇ ସେ ଭାବେ ମଗ୍ନ,
ଉଲଗ୍ନର କଥା          ଭାବିଲେ ସର୍ବଥା
ସଂସାର ଭାବେ ଉଲଗ୍ନ ।
କବି ଘୋର ଚିନ୍ତା          ଉଦ୍ଧାରେ କବିତା
ଚିହ୍ନି ଉଲଗ୍ନର ଚିହ୍ନ,
ନ ଭାବନ୍ତୁ ମନେ          ଅଶ୍ଳୀଳ ବର୍ଣ୍ଣନେ
କବେ ହେବ ଅପହୃତ ।

ଲୁଚି ସେ ନଗ୍ନତ୍ୱ          ଦେଖାଏ କବିତ୍ୱ
ନାହିଁ ତାର ପ୍ରତିବନ୍ଧ,
ଯହିଁ ଯେବେ ତହିଁ          କବିତା ଢାଳଇ
ସ୍ଥାନ ଭେଦେ କବି ଅନ୍ଧ ।"

ସା ରୂପ ବର୍ଣ୍ଣନା          ନୃପ-ବିଦୂଷକେ
କରାଇଲା ଏତେ ତର୍କ,
ସେ ସଦା ଗାରବ,          ଭାବେ "ସତେ ଆଜ
ଉଇଁବ ମୋ ଭାଗ୍ୟ-ଅର୍କ !
ସତେ ଆଜ ପକ୍ଷୀ          ଦର୍ଶନ ଲଭିବ,
ସତେ କି ନାଶିବ ଅରି,
ସତେ ନାଥାଧୀପ          କରୁଣା ବରଷି
ଦେବେ ମୋତେ ବଡ଼ କରି !"

ଏପରି ସମୟେ ଭାଷିଲେ ସଚିବ
"ହେ ଦେବ ଜାଠନୃପତି !
କେଉଁ ଲକ୍ଷ୍ୟ ରଖି ଉଡାଇଲେ ବାଜା
ଅନ୍ୟ ଢଗେ ତର୍କ ଗତି ।"

"ଧନ୍ୟ ମନ୍ତ୍ରିବର ! କର୍ତ୍ତବ୍ୟ ତୁମ୍ଭର
ସ୍ୱଜନେ ଦେଖାଅ ପଥ
ଭାବ ଚକ୍ଷୁହୀନ ସକଳ ସମାଜ
ସଡିବ ପଣେ ସମର୍ଥ ।"

ଭାଷି ଏହିପରି ମଧ୍ୟକଥକକୁ
ନବାର କରୁନାଦାସ
ଦେଖାଇଲେ ପୁଣି ଜବଚାର ଛଟା
ହାସ୍ୟରସେ ପରିହାସ ।

ସୈନ୍ୟାଧକ୍ଷ ଧୀରେ 'ଭାଷିଲେ "ଭୋ ଦ୍ୱିଜ
ରସିକଶେଖର କବି !
ତର୍କ-ଶିରୋମଣି ନିକଟେ କେ ଅବା
ଲଭିବ ଜଣେ ପଦବୀ ?

ଆଜି ତବ ଯୁକ୍ତି, ପାଣ୍ଡିତ୍ୟବୁସ୍ଥ,
ଲଭି ବାଳା ପରିଚୟ,
ଉପାୟ ରଚନା କର କପରି ତା
ଭାଗ୍ୟର ହେବ ଉଦୟ ।"

ଗୌରବ ରହୁଲେ ଯାର ଉକ୍ତି ଶୁଣି
ବିଦୂଷକ ବାକ୍ୟଯାର,
ଡରିଗଲେ କି ସେ ପ୍ରହାରର ଭାବ,
କି ମାନିଲେ ଶୂର ଗିର ?

ପ୍ରହାରକୁ କାର ଭୟ ନାହିଁ ଜଗେ
ଶଙ୍କର ଡରନ୍ତି ଯାକୁ
ସ୍ତ୍ରୀର କୁଟ୍ଟିମ୍ମିତ ବିଦୂଷକ କପାଁ
ଭୟ ନ କରିବ ତାକୁ ?

ତଥାପି ମନୁଷ୍ୟ— ଦ୍ୱିତୀୟ-ପ୍ରକୃତି—
ଅଭ୍ୟାସବଶରୁ ଦାସେ
କନ୍ଧ ପକାଇଲେ, "ଅରସିକ କାହିଁ
ମନ ଦେବ ପରିହାସେ ?

ସୁରସିକ ପିନା ଲଗାଏ ରସନା
କବିତାମୃତ ଲେହନେ,
କଠୋରହୃଦୟ ମୂର୍ଖ ବଳିକାୟ
ସମର୍ଥ କି ଆସ୍ୱାଦନେ ?"

କହିବାକୁ କିଛି ଇଚ୍ଛା ଥିଲା ଆଉ,
ନବାର ଜମ୍ବୁକ ଠାରେ
ଭରତସୂରେଣ ଭାଷିଲେ "ଏ ବାଳା
ଅଶ୍ରଦ୍ଧ ନେଲା ମୋ ଦ୍ୱାରେ ।

ସୁମହତ ପଣ କରିଛୁ ରମଣୀ
ଧ୍ୱଂସିବ ଯବନଗଣ,
ହନୁନାଶ-ଶ୍ରେରେ ଦଣ୍ଡିବ ସମରେ
ଜୀବନ କରି ହରଣ ।

ଏପରି ପ୍ରତିଜ୍ଞା ଅର୍ପ୍ୟରେ କ୍ରୋଧାଗ୍ନି
ନରର କର୍ତ୍ତିବେ୍ୟାଚିତ,
ପ୍ରତିଜ୍ଞାକାରିଣୀ ଯାବତ ଚନ୍ଦ୍ରାର୍କେ
ଅମର ଅଟେ ନିଶ୍ଚିତ ।

ପୃଷ୍ଠପୋଷକ ଯେ ହେବ ଏ ନାରୀର
ସେ ମଧ୍ୟ ଚିର ଅମର,
ଘୋଷିବ ତା ନାମ ପୁଣ୍ୟଶ୍ଳୋକ ବୋଲି
ଚିରକାଳ ଚରାଚର ।

ସାକ୍ଷାତ ଏ ଦେବୀ ଦ୍ୱିଜକନ୍ୟାରୂପେ
ଅବତୀର୍ଣ୍ଣା ଭୂମଣ୍ଡଳେ,
ପରପଦାନତ ଭାରତବାସୀଙ୍କ
ଦୁର୍ଦ୍ଦଶା ହରିବେ ବଳେ ।

ଏହାଙ୍କର ପୂଜା କରିବା ଉଚିତ
ଦେଇ ଶଙ୍ଖ ଭଲ ରଣେ,
ଏହାଙ୍କ ସମ୍ମୁଖେ ଭାରତୀୟଙ୍କର
ହୃଦୟ ତୃପ୍ତି କାରଣେ ।

ଏ ଦେଶ ଆଦେଶ ଅଟେ ଶିରୋଧାର୍ଯ୍ୟ
କ୍ଷତ୍ରିୟସୁତର ଅଙ୍ଗ,
ଦ୍ରବ୍ୟ ବଳ ଶୌର୍ଯ୍ୟ ଦେବେ ଏ ଅବଶ୍ୟ
ସକଳ ହୃଦେ ବସଙ୍ଗ ।

କରୁଛି ପ୍ରତିଜ୍ଞା ତାଙ୍କ ମୁଖ ଚାହିଁ
କରେ କରବାଳ ଧରି,
ସ୍ୱାଧୀନା କରିବି ଭାରତମାତାଙ୍କୁ
ଅଙ୍କେ ଯେ ପରକଙ୍କର ।

ନ ପାରିବି ଯେବେ ସତ୍ୟ ଏ ଜୀବନେ
ନାମ ବନ୍ଧୁ ସତ୍ୟପାଳ,
କ୍ଷତ୍ରିୟ ଔରସେ ଜାତ ନୁହେଁ କେବେ,
ନୁହେଁ ମୁହିଁ ନରପାଳ ।"

ପଣ ଶୁଣି ବାଳା ହୃଦୟେ ପୂରିଲା
ଅଦ୍ଭୁତପୂର୍ବ ସାହସ,
ସ୍ମରିଲେ "ଅମ୍ବିକେ, ଦୟା କର ବାରେ
ହେଉ ହୃନ୍ତ ଅରି ଧ୍ୱଂସ ।"

# ଆତଙ୍କ

ଭୟାସ୍ତ-ତ୍ରସ୍ତ ହରୁଅଛୁ ସଦେ
ନବାବ ନେଶରୁ ନିଦ୍ରା
ଉତ୍ତରଣ୍ଡି ପଥା ହରିତ ବସନ୍ତୁଁ
ହରଇ ରଙ୍ଗ ହରିଦ୍ରା ।

ଦିବସ ରଜନୀ ସମାନ ତା ପକ୍ଷେ
ସଦା ନିର୍ନିମେଷ ନେତ୍ର,
ଗାଣ୍ଡି ପକାଉଛୁ ପରଜାଙ୍କ ଦୁଃଖ
ଜଣାଣ ହୃଦୟ-ଛେଦ ।

ସଗ୍ରାମ-ଦାୟିନୀ ନିଦ୍ରାଦେବୀ କୋଳେ
ଚନ୍ଦ୍ରାସ୍ନାନ ଜନ ପିନା
ଅଶ୍ରୁସ୍ତ ଲଭଇ, ଚନ୍ଦ୍ରାଶୀଲେ ନାଙ୍କୁ
ଆଲିଙ୍ଗିବେ ସେ ନବୀନା ?

ଆଜ ଏ ଗ୍ରାମରୁ କାଲି ଅନ୍ୟ ଗ୍ରାମୁଁ
ଅପନ୍ତ ସ୍ତଜାମଣ୍ଡଳୀ,
ଖଣ୍ଡ ଭରେ ପଙ୍କ ପର୍ଶିଦ ସମର୍ପି
ନବାବେ ଜଣାନ୍ତି ଥଳ ।

ସିଂହଦ୍ୱାର ପାଶେ 'ମଣିମା' 'ମଣିମା'
ଡାକ ଶୁଭେ ଅନୁକ୍ଷଣ,
'ହେଲ୍ପ' ସର୍ବସ୍ୱାନ୍ତ ରକ୍ଷା କର ପ୍ରଭୁ,
ନିବାରଣ ଖଣ୍ଡଗଣ ।'

'ନ ରହିବୁଁ ଆଉ ହୋଇ ତବ ପ୍ରଜା
ନ କରିବେ ଯଦି ରକ୍ଷା,
ଜାଣିଥାନ୍ତେ ଯେଉଁ କ୍ଲେଶ ଲଭିଲୁଣି
ଲୁଟି ହୋଇଥିଲେ କଷା ।'

ସକଳ ବେଦନ ଶୁଣି ନରସ୍ୱଣ
ହେଲେଣି ନିଜେ ଅସ୍ଥିର,
ଭାବନ୍ତି "ପ୍ରଜାଙ୍କୁ ଖଣ୍ଡ କବଳରୁ
ତାରିବ ପଠାଇ ବୀର ।

ନରେଶ୍ୱର ହୋଇ ଉଦ୍ଧାର ନ କଲେ
ଉତ୍କାୟୁତକରୁଁ ପ୍ରଜା,
ପରମେଶ ପାଶେ ଦୋଷୀ ନ ହେବ କି
ଖଣ୍ଡଙ୍କୁ ନ ଦେଲେ ସଜା ?

ପ୍ରଜା ହିତ ଅର୍ଥେ ଭବେ ଜାତ ଭୂପ
ନରରୂପୀ ନାରାୟଣ,
ପ୍ରଜା ଦୁଃଖ କ୍ଳେଶ ହରଣ କାରଣେ
ନରେଶ୍ୱର କରେ ରଣ ।

ସ୍ୱକାନ୍ଧରେ ଯେବେ ନ ଦେବ ଜୀବନ
ଜନ୍ମ କପାଁ ସ୍ୱଜନ୍ତୁଲେ ?
ନ ଦେବେ କ ପ୍ରଜା ଅଭିଶାପ ମୋତେ
ମରିବା ଲାଗି ସମ୍ମୂଳେ ?

ଡକାଇବ ଆଜ ମନ୍ତ୍ରୀଙ୍କୁ ଝଟକେ,
ଶାନ୍ତି ରକ୍ଷା ପାଇଁ ବାଟ
ରଚନା କରିବେ, କୌଣସି ଉପାୟେ
କରାଇବା ଖଣ୍ଡ କାଟ ।"

ଏପରି ଚିନ୍ତିର ସୁଚିନ୍ତିରବନ୍ତ
ନବାବ ପ୍ରଜାବତ୍ସଳ
ଡକାଇଲେ ଭୃତ୍ୟ ପଠାଇ ସଭବେ,
ଚିନ୍ତିର ପ୍ରଜା–ମଙ୍ଗଳ ।

ଶିରେ ବନ୍ଧ ଦସ୍ତ ନରେଶ ଆଦେଶ
ସଭବ ଧାରେ ପ୍ରବେଶି,
କପାଳେ ଅଙ୍ଗୁଳି ଦେଇ ଦଣ୍ଡବତ
ହେଲା ହେଉଁ ଭକ୍ତି ବେଶି ।

ଗୃହେ ବସି ମନ୍ତ୍ରୀ ଭାବୁଥିଲେ ମନେ
"କପରି ଦେଶରେ ଶାନ୍ତି
ରକ୍ଷା ହେବ ଖଣ୍ଡ ଦମନ କରାଇ
ଦୂର କର ପ୍ରଜା ଭ୍ରାନ୍ତି ।

ଛୁନ୍ନ ଭିନ୍ନ କର ଦେଉଛନ୍ତି ଦୁଷ୍ଟେ
ଦେଶ ମଧ୍ୟେ ନାନା ସ୍ଥାନ,
ପ୍ରତିଫଳ ତାଙ୍କୁ ନ ଦେଲେ କି ପ୍ରଜା
ପାଶୋରିବେ ଦୁଃଖମାନ ?

ଗାଳ ଦେଉଥିବେ ସଙ୍ଗଦ୍ଧା ପ୍ରଜାଏ
ନବାବେ ମିଶାଇ ଯେତେ,
ଅକ୍ଷଷଦେ ସର୍ବ ପଡ଼ିବ ଅବଶ୍ୟ,
ମୁଁ ଅବା ସହିବ କେତେ ?"

ଏହି ସମୟରେ ଜଣାଇଲା ଯାଇ
ରାଜ-ଆଜ୍ଞା ବାର୍ତ୍ତାବହ,
"ଡକାଉଅଛନ୍ତି ହେବାକୁ ଶୀଘ୍ରହୁ
ପ୍ରଜାଙ୍କ ଦୁଃଖ ଦୁଃସହ ।"

'ଭଲ' ବୋଲି ମନ୍ତ୍ରୀ ଉଠିଲେ ଅସ୍ଥାନୁଁ
ଗମିଲେ ରାଜନ-କକ୍ଷେ
ପଥେ ଦେଖି ଶୁଣି ପ୍ରଜା କଲବଲ,
ଅସହ୍ୟ ଯା ହୃଦ ପକ୍ଷେ ।

କାନ୍ଦି କହେ କେ 'ମୋ ସନ୍ତାନ ମରିଛି
କପାଳ ଫଟାଇ ମୋର,'
ରମଣୀ କେ କହେ 'ଶୋକାର୍ଣ୍ଣବେ ମୋତେ
ପେଲି ମଲେ ହୃଦୟେଶ୍ୱର ।'

ମହାଜନ କେହି କହେ ମନ୍ତ୍ରିବରେ
ଧନ ଲୁଟି ଯିବା କଥା,
ହୋଇଥିଲା ଯେତେ ବଳ କଳ ଯୋଗ
ଯେତେ କହିଥିଲା ମଥା ।

ଜମିଦାର କେହି କହେ 'ମହାଶୟ,
ଦଳବେହେଲଏ କାଲି
ଏକା ଏକା ଅବେ ପ୍ରାଣ ବସର୍ଜିଲେ,
ଅମାର ହେଲା ମୋ ଖାଲି ।

ଭୟେ କହୁଦେଇ ଗୁପ୍ତ ଧନ ଯେତେ
ଥିଲା ମୋର ଆଖି ତଳେ,
କୁଟୁମ୍ବ ରକ୍ଷଣେ ଗୋଡ଼ତଳେ ପଡ଼ି
ସମ୍ପଦ ଦେଲି ବଦଳେ ।'

କେତେ ଯେ ଆପତ୍ତି ଶୁଣିଲେ ସଚିବ
କରିବ କେ ତା ସୁମାର ?
ଦେଖିଲେ ହିଁ କେତେ ନରନାରୀ କାନ୍ଦ
ନୟନୁ ବୁହାନ୍ତି ବାର ।

ସଭେ ଦେଇ ବୋଧ ଆଶ୍ୱାସ ବଚନେ
ବଙ୍ଗ ନବାବଙ୍କ ପାଶେ
ପହୁଞ୍ଚି କପାଳେ ଲଗାଇଲେ କର
ପ୍ରଣମି ଜକଣ-ଭାଷେ ।

ଆଦରେ ଆସନେ          ବସାଇ ବଙ୍ଗେଶ
ସରବେ ଭାଷିଲେ ଧୀରେ,
"ଦେଖ ମନ୍ତ୍ରିବର,          ଭାସିଲାଣି ରାଜ୍ୟ
ପରଜାଙ୍କ ନେତ୍ରନୀରେ ।

ବିପଦ-ସାଗରେ          ମଗ୍ନ ଦେଶବାସୀ
ଡକାୟତ ଅତ୍ୟାଚାରେ,
ସ୍ତ୍ରୀଜନ କେତେ          ଶିରେ କର ମାରି
ଗୁହାରି କରନ୍ତି ଦ୍ୱାରେ ।

କିପରି ଏ ଦୁଃଖ          ଦୂର ହେବ ତାର
କରିବା ଲାଗି ବ୍ୟବସ୍ଥା
ଡକାଇଲି, ମଧ୍ୟ          ଦେଖୁଥିବ ନିଜେ
ପ୍ରଜାବର୍ଗ ଦୁରବସ୍ଥା ।"

ଉତ୍ତରିଲେ ମନ୍ତ୍ରୀ          "ଗ୍ରାମେ ଗ୍ରାମେ ରହି
ସୈନ୍ୟଙ୍କେ ଦେଇ ପହରା,
ଦଳ କେତେ ଧରି          ଆଣିଲେ ସହଜେ
ସକଳେ ପଡ଼ିବେ ଧରା ।

ଚତୁର୍ଦ୍ଦିଗେ ଘେରି          ସୀମାନ୍ତ ପ୍ରଦେଶେ
ଅସ୍ତ୍ର ଧରି ସୈନ୍ୟଗଣ
ଲୁଚି ରହିଥିବେ,          ଖଣ୍ଡେ ଆସିମିଲେ
କରିବେ ଗୁଳି ବର୍ଷଣ ।

ପ୍ରାଣ ବିସର୍ଜିବେ ଖଣ୍ଡେ ସେନା ହାତେ,
କେହି ଥିବା ଧର୍ମ ପଣ୍ଡି
ବେଣ୍ଡି ପିନ୍ଧି ପଣ୍ୟ କହିବେ କୋରଡ଼ା—
ମାଡ଼ ଖାଇ ପଡ଼ି ଘଣ୍ଡି ।"

ମନ୍ତ୍ରୀ ମନ୍ତ୍ରଣାରେ କରି ଅଙ୍ଗୀକାର
ଧର୍ମୀଶ୍ୱର ବଙ୍କେଶ୍ୱର,
ଆଦେଶିଲେ ସେନା— ନାୟକେ "ଏକ୍ଷଣି
ସୈନ୍ୟ ଗ୍ଣୁଲ ବହୁତର ।

ବନ ଜନପଦ ସୀମାନ୍ତ ପ୍ରଦେଶ
ନଗର ବନ୍ଦର ଗ୍ରାମେ
ସର୍ବନ ଯେପରି ସୈନ୍ୟେ ଥିବେ ଘେରି
ଦବାନଳି ଅଷ୍ଟଯାମେ ।"

ପରାମର୍ଶ ଅନ୍ତେ ଚଳିଲେ ସକଳେ
ବନ୍ଧି ବଙ୍ଗାଧିପ ପଦ,
ନିଜ ନିଜ ବାସେ କର୍ତ୍ତବ୍ୟ ସାଧନେ,
ଜାଣିବେ ଭାବି ବିପଦ ।

ଏଣେ ସେନାପତି ଶିବିରକୁ ଯାଇ
ଠୁଳ କରି ସୈନ୍ୟଗଣେ,
ପରାମର୍ଶମତେ ଦଳ ଦଳ କରି
ପେଷିଲେ ଖଣ୍ଡ ମାରଣେ ।

## ଉପ୍ରାତ

ହର୍ଷରସାପ୍ଳୁତ ପ୍ରାଚୀ-ଦଗଙ୍ଗନା
ପାଟଳ ଗଣ୍ଡମଣ୍ଡଳ
ଦେଖାଇ ଦେଉଛୁ ନଶା ଶେଷେ ଦଣି
ରବକରେ ସମୁଜ୍ଜ୍ୱଳ ।

ତମିସ୍ରକଣିକା ଘଣି ଘଣି ହୋଇ
ଯେବଥିଲ୍ଲ ଦଣଦଣ,
ଓଲାଉଛୁ ଜମେ ସୁଦାର୍ଘ କିରଣ—
ମାର୍ଜନରେ ନଲକ୍ଷଣ ।

କୋଳାହଳ କର ବହଙ୍ଗମଦଳ
ଛାଡ଼ ନାଡ଼ ବହାୟସେ
ଉଡ଼ ବୁଲିଲେଣି ତମ-ବପଦରୁ
ଉଦ୍ଧାର ଲଭି ହରଷେ ।

ସ୍ମିତ ଶ୍ୟାମଳ— ତୃଣକ୍ଷେତ ସମ
ଦଶନ୍ତ ବହଙ୍ଗଦଳ,
ଶ୍ୟାମା ଶୁକ ସାରୀ ଭଦଭଦଲଆ
କପୋତାଦ ଅବକଳ ।

ପ୍ରଫୁଲ୍ଲ କୁସୁମ ସୁବାସକୁ ଆଣି
ବାଣ୍ଟିଲାଣି ଗନ୍ଧବହ,
ପରଧନ ଦାନେ ଦାନୀ ହେବା ନଜ
ମିଳଇ ଭବେ ପ୍ରତ୍ୟକ୍ଷ ।

ଏବେ ମଧୁଋତୁ ଉଷା ସମୀରଣ
ମଳୟ ସୌରଭେ ଭରା,
ଚହ୍ଁ ପୁଷ୍ପବାସ ମିଶି କାମୁକକୁ
କ୍ଷଣେ କରେ ଆତ୍ମହରା ।

ଗୁଣୁ ଗୁଣୁ ସ୍ୱନେ ମଧୁମକ୍ଷିଗଣ
ସୁମନୁଁ ସୁମନେ ଉଡ଼ି,
ଗାଇଲେଣି ବନ୍ଦି ନାମ ଉଷା କାଳେ
ମକରନ୍ଦାମୃତେ ବୁଡ଼ି ।

ସ୍ମରଣରେ ଦଶ ସୁନୀଳ ଭ୍ରମର
ହତବୁଦ୍ଧି ହୋଇ ଅଳି
କରେଂ ପୁଷ୍ପ ପାଶେ ଦୀର୍ଘ ଗୁଁଜି ସ୍ୱରେ
ଢେବେ କୁସୁମରେ ଗଳି ।

ରଥାଙ୍ଗ ମିଥୁନ ମିଳନ ହେଲାଣି
ଉଦୟାନୁ ସନ୍ଦର୍ଶନେ,
ତାଳିଲାଣି ତାନ ପଞ୍ଚମ କୋକିଳ
ମଧୁଁ ସମେ ଉଚ୍ଚ ସ୍ୱନେ ।

ଫାଟିଗଲା ପରି ଜଣାଯାଏ ସ୍ୱର—
ଲହସ୍ୱ ଶେଷକୁ କଣ୍ଠ,
ମାନ ପୁନର୍ବାର ଆରମ୍ଭଇ ହଂସ
ପୂର୍ବପରି କୁହୁ କଣ୍ଠ ।

ଯମୁନାକୁ ସ୍ନାନ କରଣେ ଗମନ୍ତ
ମଥୁରା-ବଧୂଏ ମିଳି,
ଶିରେ କାଖେ ହାତେ ଶୂନ୍ୟ ଘଟ ଧରି
ମୁଖେ ବସ୍ତ୍ର-ଦ୍ୱାର କଳି ।

କାଳନ୍ଦୀ-କୂଳରେ କଦମ୍ବ ମୂଳରେ
ରୁଣ୍ଡ ହୋଇ ବାଳାଗଣ
ଗଳ୍ପ କରୁଛନ୍ତି ଗତ ରଜନି ରତି
ଦକ୍ଷୟରେ ଜଣୁଁ ଜଣ ।

ସ୍ୱାଭାବିକ ନାରୀ ଜାତି ଲଜ୍ଜାଶୀଳା
ହେଲେହେଁ ରମଣୀ ଦଳେ
ନିର୍ଲଜ୍ଜ ପରାୟ ଆଳାପନ୍ତି ଯଥା
ଯୁବକ ଯୁବା ମଣ୍ଡଳେ ।

ଘାଲ ଜଳେ ନାବ ବୁଲଇ ନାବିକ
ନ କରି ଦନ୍ତ ମାର୍ଜନ,
'ନାସ୍ତି-ହୃଦ-ଶ୍ୱେର ଗୋପାଲ କିଶୋର'
ସଙ୍ଗୀତ କରି ଗାୟନ ।

ତରଙ୍ଗ-ଦୋଳାରେ ଝଲମଲ ତଟୀ
ଝିଲ ନଭେ ମେଘ ପରି
ନିଜେ ଖେଳି ଦୋଳି, ଖେଳାଉଛନ୍ତି ସଦା
ଆରୋହୀଙ୍କୁ କୋଳେ ଧରି ।

ତୀର-ବନ-ଲକ୍ଷ୍ମୀ ମୁଖ-ପ୍ରତିବିମ୍ବ
ଯମୁନା-ଜଳ-ମୁକୁରେ
ଦୋଳିଖେଳରତ ତରଙ୍ଗ ସଙ୍ଗତେ
ନର୍ତ୍ତଏ ନିଜ ଶକୁରେ ।

ଚକ୍ରବାକ ପନ୍ତି ଗଳଦେଶ ଢଣେ
ରଞ୍ଜକରେ ମନୋହର
ସଲିଳ ସୀମାନ୍ତେ, ଶମ୍ପାରେଖା ଯଥା
ପର୍ବତ-ଶିରେ ସୁନ୍ଦର ।

ପାଳିତ ମରାଳ ଗର୍ବେ ଗ୍ରୀବା ଟେକି
ସଙ୍ଗିନୀକୁ ସଙ୍ଗେ ଧରି
ମଣ୍ଡଳ-ଆକୃତି ହଂସଦଳ ଅଗ୍ରେ
ଜଳେ ଚଳେ ରବ କରି ।

ନୂପୁର-ନିସ୍ୱନେ ନିର୍ଭୟେ ସାରସେ
ଅନୁସରି ରାଜହଂସେ
ଗମନ୍ତି ଯେସନ ପରିଷଦଦଳ
ନୃପପୃଷ୍ଠେ ସୁସାହସେ ।

ଶୁଭିଲାଣି କୂଳ— କାନନେ ନାଗର

ଡାହୁକ ଡାକର ଛଳେ,

'ବିମଳ ପ୍ରଭାତ ହେଲା ଉପସ୍ଥିତ

କର୍ତ୍ତବ୍ୟ ସାଧ ସକଳେ ।'

ବହୁପରିବାର— ପୂର୍ଣ୍ଣ ଦଳବଦ୍ଧ

ଗୈରିକମୁଖ ମର୍କଟ

ବାଲୁକା ପର୍ବତ ତେଜି ଆସିଲେଣି

କୁଁକାର କରି ଉତ୍କଟ ।

ବାନର ଶାବକେ ମାତା କୋଡ଼ ଛାଡ଼ି

ଡେଇଁ ଡେଇଁ ନାନା କ୍ରୀଡ଼ା

କରୁଛନ୍ତି ଡାଳେ ଓହ୍ଲାଇ କେବେ ବା

ପଛ ପଦେ ହୋଇ ଛିଡ଼ା ।

ଜଳେ କିବା ସ୍ଥଳେ ସର୍ବେ ପୁଲକିତ

ଦେଖି ଉଷା ଆଗମନ

ପାପମୁକ୍ତ ଆତ୍ମା ପ୍ରଫୁଲ୍ଲିତ ଯଥା

ଲଭିଲେ ବ୍ରହ୍ମ ଦର୍ଶନ ।

ଏକାଳେ ସହସା ବନଚର ଘୋର

ଧାଇଁବାରୁ ଉତ୍ପାତରେ

ଜଣାଗଲା କେହୁ ଶିକାରୀ କାନନେ

ଶିକାର କରେ ଅଦୂରେ ।

ମାତ୍ର ଏ ଧାରଣା ଭ୍ରମପୂର୍ଣ୍ଣ ବୋଲି
ଅଳ୍ପ କ୍ଷଣେ ହେଲା ଜ୍ଞାନ,
ଦେଖାଗଲା ଦୂରେ ରଣସାଜିଗଣ
ଉଡ଼ାନ୍ତି ଊର୍ଦ୍ଧ୍ୱ ନିଶାଣ ।

ସମୁଦ୍ର ଲହରୀ ପରି ମାଡ଼ି ଆସେ
ରଜପୁତ-ସୈନ୍ୟଶ୍ରେଣୀ,
ସୁଶୁଭ୍ର ତରଙ୍ଗ— ଚୂଡ଼ା ସମ ଶୋଭେ
ଶସ୍ତ୍ର ଶିରସ୍ତ୍ରାଣ ବେଣି ।

ସର୍ବେ ଅଶ୍ୱାରୋହୀ ଅତି ଦ୍ରୁତଗାମୀ
କରନ୍ତେ ହୟ ଧାବନ,
ପୃଷ୍ଠଭାଗେ ଧାଇଁ ସିନ୍ଧୁ ଘୂ-ଘୂ ସମ
ଉଦ୍ଧାରେ ଶବ୍ଦ ପବନ ।

ରଣତୂରୀ ସ୍ୱର ଶୁଭେ ବେଳେ ବେଳେ
ଚମକାଇ ସାରବୃନ୍ଦ,
ଶୁଣି ଭାବେ ଦେଶ ପେଷିବ କି ବଜ୍ର
ବରଷା ବଳା ଅମ୍ବୁଦ ?

'ଜାଳି ଦେଇଯିବେ ଘରଦ୍ୱାର ଅବା
ହାଣି ଦେଇଯିବେ ମୁଣ୍ଡ,
କିବା ଧନ ଦ୍ରବ୍ୟ ଲୁଟିକରି ନେଇ
ଭଣ୍ଡାରେ କରିବେ କୁଣ୍ଡ ।'

'କେଉଁ ରାଜ୍ୟ ହେଲେ କରିବେ ଅଧୀନ
ନୋହିଲେ ମରିବେ ରଣେ,
ମରେ ମଧ୍ୟ ଏକ ଦେଶ ମସ୍ତକରେ
ବଜ୍ର ପଡ଼େ ଅକାରଣେ ।'

ଆଜ ଏ ସୈନ୍ୟକେ ଘୁଡ଼ୁଁ ଘୁଡ଼ୁଁ ଗୁଳି
ବର୍ଷିଲେ ମଥୁରା ପ୍ରତି,
କିଏ କେଉଁ ପଥେ ପଳାଇଲେ କେହି
ଏକାବେଳେ ଭାଳ କତି ।

ଜୟ ଶବ୍ଦ ଡାକ ମହୁରୀଗଣ ସେନା—
ମଣ୍ଡଳରେ ଘୋରତର,
ଜୟ ସତ୍ୟପାଳ ଭାରତ-ସୁରେଶ
ଜୟ ଜୟ ଜାଠେଶ୍ୱର ।

ସେତେବେଳେ ଥିଲା ମଥୁରା ମୋଗଲ
ଅଧିକାରେ ବୋଲି ଜନେ
ଜାଣିଗଲେ ରଣ ଆରମ୍ଭିଲା ଜାଠ—
ନୃପତି ମୋଗଲ ସନେ ।

କେହି ସୁଚତୁର ମଥୁରାନିବାସୀ
'ଜୟ ଜାଠପତି' କହି
ଉଦ୍ଧରିଲେ ସୁଦ୍ଧା ଘରଖଣ୍ଡି ଅଗ୍ନି—
କୋଉଁ ବଳ କାହିଁ ରହି ।

ଅଧିକୃତ ହେଲା ମଥୁରାନଗରୀ,
ନାଗରକ-ଦ୍ରବ୍ୟ ଆଜ,
ଜାଠେଶ୍ବର ପେଷା— ସାରବର୍ଗେ ସର୍ବ
ଯାଇଛେରେ ଅନନ୍ତ ରାଜ ।

ପଞ୍ଝା ପଞ୍ଝା ହୋଇ ସ୍ଥାନେ ସ୍ଥାନେ ଲୁଣ୍ଠ
ହୋଇଛନ୍ତି ଜାଠସାରେ,
ଭକ୍ଷଣ କରନ୍ତି ରୁଚି ଫଳ ମୂଳ
ଦେଖାଇ ଜ୍ୱଳନ୍ତାଗ୍ନିରେ ।

କୌଣସି ଦଳରେ ପଡ଼ିଛି ଚହଳ
'ମିଳଲା କ ଶ୍ରେଷ୍ଠ ଦ୍ରବ୍ୟ ?'
'ମୋଣଖଞ୍ଜା ପେଡ଼ ଦୁଇଟି ମିଳିଛି
ଚକ୍ଷୁ ପକ୍ଷେ ଯାହା ନବ୍ୟ ।'

ସୁକୁମାର-ଅଙ୍ଗୀ ସାରବର କେହି
ତଣ୍ଟିରେ କାକର ଛିଟା,
କେ ବା ଟଙ୍କା ସୁନା ସୁମାରୁ କରଇ
ସିନ୍ଦୁକଗୁଡ଼ାକ ଚୀରୁ ।

କେତେ ରଙ୍ଗ କଏ କରୁ ସେ ନଗରେ
ରହିଲେ ଦବା ରଜନୀ,
ତପ୍ପର ପ୍ରତ୍ୟୁଷେ ଚଳଲେ ଉତ୍ତରେ
କରୁ ଘୋର ଜୟଧ୍ୱନି ।

# ସମର

ଭାଗୀରଥୀ ତୀରେ         ଲାଗିଛି ସମର
ଦ୍ୱନ୍ଦ୍ୱ ଯବନର ମଧ୍ୟେ,
ଯୁଝନ୍ତି ବେନିଏ         କରି ଦୃଢ଼ ପଣ
ଏକ ଅପରର ବଧେ ।

ଜୁରକାଷ୍ଟ ଦଳ         ଯାଇଥିଲେ ବଙ୍ଗ—
ନବାବ ରାଜ୍ୟ ଲୁଣ୍ଠନେ
ବାଧ୍ୟ ହେଲେ ରଣ         କରିବାକୁ ଆଜ
ଯବନର ଆକ୍ରମଣେ ।

ହରିଥିଲେ ଲୁଟି         ଫେରୁଥିବେ ଧନ—
ରକ୍ତପାତେ ଅର୍ଯ୍ୟଷାରେ,
ବାଧା ପାଇବାରୁ         ଶତ୍ରୁ ସୈନ୍ୟ ଯୋଗେ
ଯୁଦ୍ଧ କଲେ ଗଙ୍ଗାତୀରେ ।

ସ୍ୱେର ଖଣ୍ଡଙ୍କର         ଲକ୍ଷଣ ଏ ସଦା
ପାଇଲେ ପ୍ରତିବନ୍ଧକ
ପ୍ରାଣ ଥିବାଯାଏ         ସମର ନ କଲେ
ନୁହନ୍ତି ନତମସ୍ତକ ।

ବରଷାସୂଚକ ଜନ୍ଦାଧାଡ଼ି ପରି
ଜାହ୍ନବୀରେ ପୋତପନ୍ତି
'ଭବାନୀ' ଚିହ୍ନିତ ପତାକା ଉଡ଼ାଇ
ସିନ୍ଧୁ ଡଗୁଁ ଆସୁଛନ୍ତି ।

ଅନ୍ୟ ଡଗେ ମଧ୍ୟ ସ୍ଥଳପଥେ ବହୁ
ମୁସଲମାନ ସୈନିକ
ଅସନ୍ତି କେତକ ନେଇକ ରଣବାଦ୍ୟ
ପ୍ରକମ୍ପାଇ ଚତୁର୍ଦ୍ଦିକ ।

କେତେ ଅଶ୍ୱାରୋହୀ ପଦାତି ଧାବନ୍ତି
ଗଙ୍ଗାକୂଳ ରଣାଙ୍ଗନେ
ସେନାଣୀ ସମର— ତୃଷ୍ଣାସ୍ନାବେଶେ
ଅବ୍ରତ ପ୍ରାଣନାଶନେ ।

'ଜୟ ବଙ୍ଗେଶ୍ୱର' ଧ୍ୱନି ଶୁଭେ କାହିଁ
'ଜୟ ଭବାନୀ' କେ ସ୍ଥାନେ,
କାହିଁ ନାଳକାସ୍ତ୍ର ଶବ୍ଦେ କର୍ଣ୍ଣେ ଧସ୍ତ
କାହିଁ ଶସ୍ତ୍ର ଝନଝାନେ ।

କାହିଁ ରେରେକାର ଗର୍ଜ୍ଜନ ହୁଙ୍କାର
ଧର ଧର ମାର ମାର,
କାହିଁ ତୁରଙ୍ଗମ ଧାବନେ ଶୁଭଇ
ଟପ ଶବ୍ଦ ବାରମ୍ବାର ।

କୁଳୁ କୁଳୁ ରବେ ଗଙ୍ଗା ମଧ୍ୟ ତହିଁ
ମିଶାଇ ବଣେ ଗର୍ଜନ,
କହେ "ସାରେ ! କେନ୍ତୁ ସମରେ ଜଣିବ
ଦେଖୁଛି ମୁଁ ମଧ୍ୟଜନ ।

କେତେ କେତେ ରଣ ଦେଖିଲଣି ମୁହିଁ
ଜନ୍ମୁ ଅଙ୍ଗୁ ଜନ୍ମ ଧରୁଁ,
କିଏ ବା ତାହାର ଇୟତ୍ତା କରିବ
ମୋହ ତୀର, ମୋହ ଜଳୁଁ ?

ଅଙ୍ଗ ପୁଷ୍ଟି ସାଧେ ବେନ ପାର୍ଶ୍ୱ ତଟ
ନର ରକ୍ତ-ମେଦ-ମାଂସେ
ମୁହିଁ ଯାଇ ନଭେ ଭ୍ରମି, ବର୍ଷାରୂପେ
ତହିଁ ବନ୍ଧ ଯେନ ଆସେ ।

ଶୋଷିନଏ ଯାହା ଶବଗଣି ରସ
ତୀରଭୂମି ଅଭ୍ୟନ୍ତର,
ମୁହିଁ ପଶି ତହିଁ ପ୍ରସ୍ରବଣ ହୋଇ
ଆଣଇ ତାହା ସତ୍ୱର ।

ପାତାଳ ପର୍ଯ୍ୟନ୍ତ ଯାଉଥାଏ ସେତେ
ମୃତ-ଅଙ୍ଗ-ରସାବଳି,
ଭୋଗବତୀ ନାମେ ତହିଁ ବନ୍ଧ ଆଣେ
ସେ ସକଳ ତଟେ ଜଳି ।

ଜାଣିପାରେ ଯେବେ କୂଳଭୂମି ମୋର
ଶସ୍ୟର ତା ରସେ ଭରା,
ଗାଳି ଦେଇ ମୋତେ ଅତଡ଼ା ଛଳରେ
ଟେକା ମାରେ ଖର ହସ ।

ସେ ଟେଲା ପ୍ରହାର ହୁଏ ଅନୁକୂଳ
ମୋହ ପ୍ରତି ମୁହିଁ ଜାଣେ,
ବନ୍ୟାର ଲକ୍ଷଣ ବର୍ଷର ସେ ଟେକା—
ଗୁଣ୍ଡକ ଗୋଟାଇ ଆଣେ ।

ଅଧିକ ବିରକ୍ତ ହୋଇ ତଟ ଶତ୍ରୁ
ପୁନଶ୍ଚ ଟେଲା ପ୍ରହାରେ,
ମୁହିଁ ମଧ୍ୟ ତାକୁ ରଗାଇବା ପାଇଁ
ତରଙ୍ଗେ ଝର୍ପାଟେ ମାରେ ।

ପ୍ରତ୍ୟହ ହାରଇ ତଥାପି ମାରଇ
ଖାଏ ମୋହଠାରୁ ମାଡ଼,
ମୁହିଁ ହୁଏ ସ୍ଥୂଳ, ସେ ହୁଏ ସୁକ୍ଷୀଣ
ଦେଇ ଖଣ୍ଡେ ଖଣ୍ଡେ ହାଡ଼ ।

ଆମ୍ଭ କଳର ହିଁ ସାକ୍ଷୀ ଅଟେ ଜାଲ
ସର୍ବଦର୍ଶୀ ସୃଷ୍ଟିର ଯେ,
ଯେପରି ମୁଁ ତୁମ୍ଭ ସମର ଦେଖୁଛ
ଜନ୍ମଦନୁଁ ମହାମଙ୍କେ ।

ସଙ୍ଗ କଳରେ ଥାଏ ଜଣେ କେହୁ
ମୀମାଂସକ ସଙ୍ଗକାଲେ,
କାହୁ ହେଲେ କେହୁ ନ ଥିଲେ ଥାଆନ୍ତି
ଆଦ୍ୟାଶକ୍ତି ଥାଉ ଆଲେ ।

ଭବିଷ୍ୟତ ଛନ୍ଦ ନ ଦେଖିଛୁ ମୁହିଁ
ଦେଖିଛୁ ଅତୀତ ଛନ୍ଦ,
ଗଣିଅଛୁ ଖାରେ ! ତୁମ୍ଭ ପ୍ରାୟୁ କେତେ
ମୋ ଜଲେ ହେଲେ ପତନ ।

ତୁମ୍ଭେ ପିନା ଆଜ ସମରେ ମରୁଛ,
କଏ କେତେ ପରକାରେ
ମରୁଛନ୍ତି କେତେ ଜାତରେ ମାନବେ
ମୁହିଁ ତାହା କହୁପାରେ ।

ଏକା ଆର୍ଯ୍ୟ କେତେ ଜାତରେ ବଧଲ
ସୂର୍ଯ୍ୟ ଚନ୍ଦ୍ର ଅବ ବଂଶେ
ନାନା ଶାଖାକୁଳ ସୃଷ୍ଟି କର ଜାଣେ
କପର ମଲେ ନରଂଶେ ।

ମୋ ଭଗିନୀ କାଳ— ସ୍ରୋତସ୍ୱତୀ ଠାରୁ
ଶୁଣିଛୁ ମୁଁ ସେହୁ ଅର୍ଯ୍ୟେ
କାଶି ଅନ ଠାରୁ ଯାଇଥିଲେ ଭିନ୍ନ
ଦଗକୁ ବଭିନ୍ନ କାର୍ଯ୍ୟେ ।

ତାହାର ବଳରେ          କିଛି କାଳ ପରେ
ସେ ଆର୍ଯ୍ୟ କଲେ ପ୍ରସାର
ହିନ୍ଦୁ ବୌଦ୍ଧ ଜୈନ          ଶିଖ ଖ୍ରୀଷ୍ଟିୟାନ
ଯବନାଦ ଜାତି ବାର ।

ଏକ ମାତା ଗର୍ଭୁଁ          ଯଦକଲେ ଜନମ,
ସରବେ ହସାବେ ଭ୍ରାତା,
ସମସ୍ତେ ତ ମନଲ          ଏକତ୍ର ମିଳିବେ
ଜାଣନ୍ତୁ ତା ଆଦମାତା ।

ବୃଥାରେ କଳହ          ଲଗାଉଛ ଆଜ
ଭାଇ ଭାଇ ମଧ୍ୟେ ଯୋଧେ !
ହଣାହଣି ହେଉ—          ଅଛ ପରସ୍ପରେ,
ମଗ୍ନମନ ମହାକ୍ରୋଧେ ।

କ୍ରୋଧାଧୀନ ହୋଇ          କରୁଛ ସମର
ସ୍ୱକୀୟ ବାକ୍ୟ ରକ୍ଷଣେ,
ବୁଝି ନ ପାରିବ କି          ସେହି କ୍ରୋଧ ତୁମ୍ଭେ
ମରିବ ଯେକାଳେ ରଣେ ?

କ୍ରୋଧ ଅଟେ ତୁମ୍ଭ          ଦୁହିଙ୍କ ବଇରୀ
ବେନି ହୃଦ ଅଧିକାରୀ,
ମଗ୍ନଉଛି ରହି          ଗୋପନେ ହୃଦୟେ
ତୁମ୍ଭେ ହିଁ ଶତ୍ରୁ ତାହାର ।

ଆଦେଶ ତାହା ସଙ୍ଗେ   କର ଘୋର ରଣ
ଦେଖାଇ ବଲ ବିକ୍ରମ,
ହିନ୍ଦୁଁ ତଡ଼ ତାକୁ   ସାମ୍ୟଗୀତ ମନ୍ତ୍ର
ଜପି ଭୁଲ ଜାତି ଭ୍ରମ ।”

କହୁଗଲେ ଯେତେ   କୁତ୍ତୁ ବବେ ଗଙ୍ଗା
ନ ଶୁଣନ୍ତି ସାଟେର ତଳେ,
ରଣମଦେ ମତ୍ତ   ଏକ ଦଳ ଅନ୍ୟ
ଦଳ ନିକଟରେ ମିଳେ ।

ଭବାଣୀ ସୈନକେ   ହନ୍ ଥର ଘାଦ
ମାରନ୍ତି ଯବନଗଣେ,
ଜ୍‌ବକାଶ ଦଳ   ବଗୁର ଯବନେ
ଧାବନ୍ତି ହନ୍ ମାରଣେ ।

କେଉଁ ସକେ୍ୟଶ୍ୱରୀ   ଅଟନ୍ତି ଭବାଣୀ
ନ ଜାଣନ୍ତି ବଙ୍ଗାଧିପ,
ଭାବନ୍ତି "ଏ ଅଟେ   ଖଣ୍ଡାଧିକାରିକା
ଖଣ୍ଡ-ସରଜ୍ୟ ଏହୁ ଯାପ ।”

ପୁଣି କହୁବନ୍ତି   “ରାଣୀ ଲୁଟେଁ ଯେବେ
କାହୁଁ ଆଣି ଏତେ ସାର
ଜମା କଲା, ଯାହା   ଭରେ ତା ଚରଣେ
ଧରା ଲଗାଇବ ଶିର ।

ଯେଉଁ ସୈନ୍ୟ ବଳେ ପୃଥ୍ୱୀ ବିଜୟ
କରିପାରେ ଖଣ୍ଡଧାରିଣୀ,
ଅଧୀଶ୍ୱରୀ ନୋହି କାହିଁ ରହିଥିଲା,
ରୁଣ୍ଡ କଲା ଏବେ ଆଣି ।

ଭବାନୀ ନାମରେ ନାମିତ ଯେଣୁ ସେ
ସମ୍ଭବ ହିନ୍ଦୁ-ଲଳନା,
ଚ ମୋକ୍ଷଦାୟୀ ମାହେଶ୍ୱରୀ ଆଖ୍ୟା
ଅନ୍ୟ ଜାତି ପକ୍ଷେ ମନା ।

ଆର୍ଯ୍ୟ ବ୍ୟତିରେକେ ହୈମବତୀ ନାମେ
ଆଖ୍ୟାତ ନୁହେ ମାନସୀ,
ସୂକ୍ତିସୂକ୍ତ ଯିନା ଆର୍ଯ୍ୟବାଳା ପକ୍ଷେ
ବହିବା ଏହି ପଦବୀ ।

ଉତ୍କଳୀୟ ରାଣୀ ହେଲୁ ଥବା ସେହି
ଜପନ୍ତି ନାମେ ବିଦିତା,
ଆଜ ଏ ସମରେ ଭବାନୀ, କାଳକୁ
ଅନେ୍ୟ ହେବ ପରିଚିତା ।

ଉତ୍କଳୀୟ ଯାର ଅଟଇ ଶାସିକା,
ସୁଜିବେ ସେ ବହୁବେଣୀ,
ଏକ ଦିନେ ଯେଉଁ ରୂପ ଦେଖାଇବ
ଅନ୍ୟ ଦିନେ ତା ବିଦ୍ୱେଷୀ ।

ଉପରୁ ବା ଏବେ କରବ ବର୍ଷଣ
କି କୁଳେ ଜାତ ଏ ନାଶ,
କେଉଁ ଅଭିପ୍ରାୟେ ଜୁର କରୁ କରୁ
ଘୁଞ୍ଚିଲା ମୋତେ ହକାରି ।

ସେନାପତି ତାର ଅଟେ ରଘୁବୀର,
ସର୍ବ ଶିରେ ଉଷ୍ଣ ଗାର,
ସତେ କି ଏ ହନୁ ? ଅବା ଛଦ୍ମବେଶୀ
ସମୁଦ୍ର ହେଲେ ବାହାର ।

କେଉଁ ଦେଶବାସୀ ଅଟେ ଏ ଭବାନୀ,
କେଉଁ ଅଭିଳାଷେ ରଣ
କରେ ମୋହ ସଙ୍ଗେ ଚୂର କରି ଆସି
ସୈନ୍ୟ ଆଣି ଅକଳନ ।

ସାଗର ବକ୍ଷରୁ ଆସୁଛନ୍ତି ସୈନ୍ୟେ
ପ୍ରତି ମୁହୂର୍ତ୍ତରେ ପୋତେ,
ଏହାଙ୍କୁ ଜଣିବା ଅଟେ ଅସମ୍ଭବ,
ଭସାଇବେ କାଳ-ସ୍ରୋତେ ।

କାହୁଁକ ସମର କରବ ତା ସଙ୍ଗେ,
ଜଣିବା ନୁହେଁ ସମ୍ଭବ,
ସ୍ରୋତ ଗତି ରୋଧ ବାଲୁକାର ବନ୍ଧ—
ଦ୍ୱାରା ଅତି ଅସମ୍ଭବ ।

ସର୍ବଗ୍ରାସୀ ଦାବ— ଅନଳେ ନିଶ୍ଚଇ
ପାରେ କି ଗିଳି ନିର୍ଝର ?
ସଞ୍ଚୁ୍ୟତ ବୃଷ୍ଟି ବାତାବର୍ତ୍ତି କେବେ
ଛନ୍ଦେ କି କରେ ଖାତର ?
ଆତ୍ମସମର୍ପଣ କରିବ ମୁଁ ଯାଇ
ଖଣ୍ଡ ଅଧୀଶ୍ବଙ୍କ ପାଶ,
ନେଇ କଣ୍ଟୁ ଅର୍ଥ ଫେରିଯିବେ ସେହୁ
ନ ଇଚ୍ଛି ମୋ ଦେଶ ଗ୍ରାସ ।"

# ବିଦ୍ରୋହ

ମଥୁରାଞ୍ଚଳବାସୀ ଶୁଭ କେନ୍ଦ୍ର ଆସି
ଭାଷିଲେ ଦିଲ୍ଲୀସମ୍ରାଟେ
"ପ୍ରଭୁ ! କି ବୋଲିବି, ମଥୁରାନଗରୀ
ଆକ୍ରମିଲେ ଜାଠରାଟେ ।

ଗୋପାଳ-ପ୍ରଧାନ ମଥୁରାମନ୍ଦିର
ଜାଠେ କଲେ ଆଜି ଧ୍ୱଂସ,
ବ୍ୟାକୁଳେ ସକଳେ ପଳାଇଲେ ଯଥା
ନଜ ଆକ୍ରମଣେ ହଂସ ।

ସାନ୍ଦ୍ର କାଳେ ଶୁଭ୍ର ପାଶେ ଘେର
ବର୍ଷିଲେ ବନ୍ଧୁକଗୁଳା
ଶାନ୍ତ କରିବାକୁ ମଥୁରାବାସୀଙ୍କୁ
ଅକାଳେ ଦୁଷ୍ଟେ ଅକୁଳା ।

ହେଲା ଅଧିକୃତ ଅକ୍ଳେଶେ ନଗରୀ,
ନାଗରିକେ ହେଲେ ଦୂର,
କି ଭକ୍ତିର ମନେ ପକାଇଲା ଦୂର
ମଥୁରା ଶିରେ ଖଦୁର ।

ଜଣେ ରକ୍ଷୀ ତହିଁ,                ତସ୍କର ପ୍ରସ୍ଥାନେ
ଉତ୍ତରକୁ କଲେ ଗତି,
ସମ୍ବାଦ ପ୍ରଦାନେ                ଆସିଛି ମୁଁ ଧାଇଁ
ଏଣୁ ସ୍ୱାମୀ ତବ କତି ।

କାଳିନ୍ଦୀ କୂଳସ୍ଥ                ନିବିଡ଼ କାନନେ
ଲୁଚିଥିଲୁଁ ନାଗରିକେ,
ସ୍ୱଳ୍ପଯାନ୍ତେ ସୈନ୍ୟ                ଆସିଲ ଗୋପନେ
ଗୃହଁ ଗୃହଁ ଚତୁର୍ଦ୍ଦିକେ ।

ନାହିଁ ଗୃହ ଦ୍ୱାର,                ନାହିଁ ସେ ନଗରୀ,
ନାହିଁ ତାର ଶୋଭାରାଶି,
କାଳ-ସମୁଦ୍ରରେ                ନିକ୍ଷେପନ୍ତେ ଜାଠେ
ଠାବ ପାଉ ନାହିଁ ଖସି ।"

ଏତେବେଳଯାଏ                ଶୁଣୁଥିଲେ ରାଜ—
ରାଜେଶ୍ୱର ସ୍ଥିର ହୃଦେ,
ସହସା ଅମାତ୍ୟେ                ଆଦେଶିଲେ "ପେଶ
ବାଧାଦାନେ ସୈନ୍ୟବୃନ୍ଦେ ।

ସେନାପତି କେହି                ଯିବ ତାଙ୍କ ସଙ୍ଗେ
କର ତ୍ୱରା ନିର୍ବାଚନ,
ବୃନ୍ଦେକ ସୈନିକ                ବଳେ ଜାଠେ ନାଶି
କରିବ ଶାନ୍ତି ସ୍ଥାପନ ।"

ଆଜ୍ଞା ପାଇ ମନ୍ତ୍ରୀ ସେନାଣୀ-ସମାଜେ
ଜଣାଇଲେ ତାହା ଜନେ,
"ଜାଠସୈନ୍ୟବର୍ଗେ ଜାଳିବାକୁ ଭସ୍ମ
କେ ଆଜ କରିବ ବନେ ?

ଇଚ୍ଛାମତେ ସୈନ୍ୟ ନେବ, ହେଲେ ଲୋଡ଼ା
ଅସ୍ତ୍ର ହେବେ ପ୍ରେରିତ,
ମାତ୍ର ଜାଠଦଳେ ସମୂଳେ ବିନାଶ
କରିବା ଅଟେ ଉଚିତ ।"

ଶଶଧରେ ଧରି— ବାକୁ ଅସମର୍ଥ
ଅଟଇ ଯେସା ବାମନ,
ହରିଣ ମାରଣେ କେଶରୀ କି କେବେ
ବଳାଇ ନ ପାରେ ମନ ?

କୁକ୍କୁଟଶାବକ ନାଶିବାକୁ ଇଚ୍ଛା
ନ କରେ କେବେ କି ବାଜ ?
ବନ୍ୟ-ପଶୁ ଭକ୍ଷି— ଦେବାକୁ କି ଆଣ
ନ କରିବ ଅହସ୍ବଜ ?

ପ୍ରଭୁ ସୈନ୍ୟକୁଳ ନ ହଟିବେ କପାଁ
ଜାଠଦଳ ମୂଲୋତ୍ପାଟେ,
ସର୍ବେ ବ୍ୟଗ୍ର ଅଗ୍ରେ ଫୁଲାଇ ହୃଦୟ
ଯିବେ ବୋଲି ଜାଠ-କାଟେ ।

ପ୍ରକାଶ କରେ କେ          ସ୍ୱ-ଇଚ୍ଛା ପ୍ରକାଶେ
ସମସ୍ତଙ୍କ ନାମ ନେଇ,
'ସକଳେ ଇଚ୍ଛିବେ          ବାଇବଲ-ମୁଖା
କେତେକେ ଦେବାକୁ ଦେଇ ।'

ସମର୍ଥକ କେହି          କହେ 'ପଠାଇଲେ
କରୁ ଅଶ୍ୱାରୋହୀ ସେନା,
ଜାଠ-ସ୍ୱଜନଙ୍କୁ          ଧରି ଆଣି ଦେବେ
ସୈନ୍ୟ କରି କେନା କେନା ।'

ଆନ ବୋଲେ 'ପଞ୍ଚେ          ପଦାତିକ ସେପରି
ଦେଲେ ତ ହେବ ବହୁତ,
ଅଶ୍ୱାରୋହୀ ସେନା          ଆବଶ୍ୟକ ବୋଲି
କହିଲୁ କପାଁ ରେ ଭୂତ ?'

ଏହିପରି ସର୍ବେ          କୁହାକୋହି ହେଲେ,
ହବନ୍ତି କ୍ଷୁଣ୍ଣ ସରବ,
'କହିବା କଥାଟା          ବୋହିବାକୁ ଦୂର
କରି କି କେବେ ବୁଝିବ ?

କେଖାଲର କରି          କହିଗଲେ ସର୍ବେ
ସାମାନ୍ୟ ମଣି ଏ କାର୍ଯ୍ୟ,
ଦେଖାଯାଉ କଏ          କାଠେ ବଜାଣିଲ
ଆଜ୍ଞା କରି ଶିରୋଧାର୍ଯ୍ୟ ।'

ଏପରି ବିଚାରି ଏକ ସେନାନୀଙ୍କୁ
ଆଦେଶିଲେ ମନ୍ତ୍ରିବର
"ତୁମ୍ଭେ ଯାଇ ବେଗେ ସସେନା ବନାଅ
ଭରତପୁର-ଈଶ୍ବର ।"
ଉତ୍ତରିଲେ ବୀର ଅବ୍ଦୁସ-ସତାର
"ଯାଉଛୁ ଆଜ୍ଞାପାଳନେ,
ନ ଫେରିବ କେବେ ଜାଟେଶ୍ବର ସତ୍ତ୍ୱ
ନ ନାଶିଲେ ସୈନ୍ୟଗଣେ ।"
'ଆଲ୍ଲା' 'ଆକବର' ସ୍ବର ସୈନ୍ୟେଶ୍ବର
ପ୍ରଣମି ଭରତେଶ୍ବରେ,
ଯଥାବିଧି ଅନ୍ୟେ ନମସ୍କାର କରି
ବାହାରିଲେ ଖରତରେ ।
ଶିବିରେ ପ୍ରବେଶି ସୈନିକେ ଆଦେଶି
କରାଇ ସୁସଜ୍ଜୀଭୂତ,
ଅଗ୍ରସର ହେଲେ ଦକ୍ଷିଣକୁ ଯହିଁ
ବିଦ୍ରୋହ-ଅଗ୍ନି ପ୍ରସୂତ ।
ଆଗ୍ରା ପାଶରେ ସେ ପ୍ରବେଶି ଶୁଣିଲେ
ଜନମୁଖୁଁ, "ଜାଠପତି
ଅର୍ଦ୍ଧ କୋଶ ଦୂରେ ଶିବିର ରଖାଇ
ଉଡ଼ାଏ ପତାକା ଛତି ।

ଝଡ ଝଡ କରି ନାଗରା ବଜାଇ
କହିଗଲାଣି ସେ ଚୂର,
ହେବ ଯେ ତା ପ୍ରଜା ରହି ସେ ଏ ସ୍ଥାନେ
ଅପରେ ହେବାକୁ ଦୂର ।

ଭ୍ରମି ଗଲେଣି ହୁଁ ଦଳ ଦଳ ହୋଇ
କେତେ ସୈନ୍ୟ ଏ ନଗରେ,
ଶୀତ ଉପୁଜାଇ ହୃଦୟ କମ୍ପାଇ
ଜଣାଇ ମୃତ୍ୟୁ ଆଗରେ ।

ଲକ୍ଷପତି ଆର୍ଯ୍ୟ ଧନବନ୍ତ ଜନ
ଦ୍ୱାର ପାଶେ ହୋଇ ଠିଆ
ଖାଇ ସାରିଲେଣି କେତେ ସୈନ୍ୟ ମଧ୍ୟ
ଯୋଧଯୋଗ୍ୟ ଜଳଖିଆ ।

ଭୟେ କେହି କେହି କହି ସାରିଲେଣି
ଆଗ୍ରାବାସୀ ମହାଜନ,
'ଯାହାର ତ ହେଲେ ପରଜା ହୋଇବୁଁ
ହେଉ ସେ ଜାଠରାଜନ ।'

ଆର୍ଯ୍ୟ କେହି କେହି ଜାତି ହିତକାମେ
ଜାଠଦଳ ମଧ୍ୟେ ପଶି,
ଆପଣାର ପରି ସୈନ୍ୟଗଣେ କହେ
'ମାର ହେ ଯବନେ କସି ।'

କେନ୍ଦ୍ର ମଧ୍ୟ ଲକ୍ଷି ଗଲେଣି ସେ ଦଳେ
କରିବେ ଇଚ୍ଛି ସମର
ଯବନ କବୁଟେ କେଉଁ ଅଭିସନ୍ଧେ
ତାହାଙ୍କୁ ସିନା ଗୋଚର ।

ଦୁଷ୍ଟ ଜାତେ ମଧ୍ୟ ଲୁଣ୍ଠାଉଥନ୍ତି
ମୁସଲମାନ ମାରଣେ
ସଂଖ୍ୟାବୃଦ୍ଧି ଲାଗି ଯେଉଁମାନେ ହିନ୍ଦୁ
କ ଥବା ହିନ୍ଦୁ ଶରଣେ ।

ମୁକ୍ତକେଶୀ କଏ ଆରକ୍ତ ବଦନେ
ରକ୍ତ-ଉତ୍ତେଜକ ବାଣୀ
ବର୍ଷି ଦେଉଥିଲୁ ଅଶ୍ୱପୃଷ୍ଠେ ବସି
"ଉଠ ହେ ଯବନେ ହାଣି ।

ନ ରଖ ହେ ସବେ, ଭାରତମଣ୍ଡଳେ
ଜୀବନ୍ତ ମୁସଲମାନ,
ହିନ୍ଦୁ ନାରୀ ସ୍ୱେର ଅପରାଧେ ତାର
ହିନ୍ଦୁଏ ବଧ ପରାଣ ।

ଭାରତଜନନୀ ଯବନ-ସେବିନୀ
ତହିଁ ପୁଣି ଅତ୍ୟାଚାର,
ସତୀତ୍ୱ-ହରଣ ଜନନୀ-ସ୍ଥାପନ
ଆଉନ୍ତା ଦେଖିଲେ ମାର ।

ସ୍ତ୍ରୀ ବାଳକ ବୃଦ୍ଧ ଅବା ଅସମର୍ଥ
ସ୍କନ୍ଧ ଦେଇ ସ୍ୱନ୍ଦ୍ଗଣରେ,
ମାଈ ସଦା ଭ୍ରମି ଏ ଭାରତ ଭୂମି
ବକ୍ଷ ଭୂଷ ଶଙ୍ଖିରେ ।

ଯବନ-ରୁଧିରେ ଜନନୀ-ହୃଦୟ—
ଜ୍ୱାଳା ଶାନ୍ତ କର ସ୍ୱନ୍ଦ୍ !
ପ୍ରସବନ୍ତୁ ଯେବେ ତୁମ୍ଭଙ୍କୁ ହେ ଆର୍ଯ୍ୟ,
ଆର୍ଯ୍ୟମାତା-ରକ୍ତବନ୍ଦ୍ ।

ଉଠ ହେ ଉଠ ହେ ଭାରତ କୁମରେ,
ଯବନେ କର ସମର,
କେତେ ଦିନ ଆଉ ଘୋର ଅତ୍ୟାଚାର
ସହିବ ମାତା ଆମ୍ଭର ?

ଜୀବନ ଉତ୍ସର୍ଗ କର ହେ ସ୍ୱନ୍ଦ୍ଏ,
ଯବନ-ନାଶନ-ବ୍ରତେ
ପ୍ରାଣ ବଳି ଦଅ ସ୍ୱନ୍ଦ୍-ଭର-ଅଭ—
ମାରଣରେ ହେ ଭାରତେ !

ସତୀ ଅଭିଶାପ ପଡ଼ୁଅଛୁ ଶଙ୍କ୍
ଉପରେ ଏବେ ହେ ଜାଣ,
ସତୀ ନାମ ଧରି ସୁଯୋଗ ସମୟେ
ନର୍ଦ୍ଦୟ ହୃଦୟେ ହାଣ ।"

## ଧିକ୍କାର

ଶିବିର ମଧ୍ୟରେ ସୈନ୍ୟପରିବୃତା
ସମରଶ୍ରାନ୍ତା ଭବାନୀ
ବସ୍ତ୍ର-ପଲଙ୍କରେ ନିଅନ୍ତି ବିଶ୍ରାମ
ହୃଦୟେ ସ୍ମରି 'ଭବାନୀ' ।
ଝରୁଛନ୍ତି ତେଣେ ରଣ ରଣୁଆର
ପ୍ରାଣକୁ ଛଡ଼ାଇ ପାଣି,
ଛର ବାସନାର ତୃପତି କାରଣେ
ଯବନେ ପକାନ୍ତି ହାଣି ।

ଏକାଳେ ଏକାକୀ ବଙ୍ଗଦେଶପାଳ
ସାମାନ୍ୟ ସୈନିକ ବେଶେ,
ପ୍ରବେଶିଲେ ପଥ ପୃଚ୍ଛି ଭବାନୀଙ୍କ
ଶିବିର ତୋରଣ ଦେଶେ ।
ସ୍ୱପକ୍ଷ ପକ୍ଷୀୟ ସୈନ୍ୟ ଘେରି ତାଙ୍କୁ
ପ୍ରହରୀ କଲା ବାରଣ,
"କେଉଁ କାର୍ଯ୍ୟେ ତୁମ୍ଭେ ଆସିଛ ଏ ସ୍ଥାନେ
ଛାଡ଼ି ଏହି ମହାରଣ ?

ଜଣାଯାଅ ତୁମ୍ଭେ ମୁସଲମାନର
ବଳିଷ୍ଠ ସୈନିକ ଅଟ,
ରଣେ ଥିଲେ କେତେ କାର୍ଯ୍ୟ ସାଧିଥାନ୍ତ
ବରୁଛ କପାଁ ସଂକଟ ?

ଫେର ଯାଇ ବେଗେ ପ୍ରଭୁ କାର୍ଯ୍ୟ କର
ପ୍ରଜାର କର୍ତ୍ତବ୍ୟ ଯାହା,
ପ୍ରାଣ ଦଅ ରଜା— ହିତେ ଜାଣ ଯେବେ
ରଜା ପ୍ରଜା ପ୍ରାଣନାହା ।"

ଉତ୍ତରଲେ ଧୀର ବୀର ବଙ୍ଗେଶ୍ୱର
"ରଜା କାର୍ଯ୍ୟେ କେହ୍ନ କେବେ,
ପର ଦ୍ୱାରେ ଠିଆ ହୁଅଇ କ ବୀର,
ନ ପଡ଼େ ସମସ୍ୟ ଯେବେ ?"

"କେଉଁ ଅଭିପ୍ରାୟେ ଆସିଅଛ ତେବେ
ଶୀଘ୍ର ଭାଷ ବୀରବର,"
ଆଦେଶିଲେ ହୋଣା— ରକ୍ଷକ ଜବାବେ
ଶୁଣି ତାଙ୍କ ଯୋଗ୍ୟୋତ୍ତର ।

"ପରିଚୟ ଦଅ ଉଦ୍ଦେଶ୍ୟ ବତାଅ
ନୋହିଲେ ଛାଡ଼ ଏ ସ୍ଥାନ,
ଜାଣିଲିଣି ତୁମ୍ଭେ ଆସିଅଛ ଏଥି
ଦେଖିବ କୌଶଳମାନ ।"

"କୌଶଳ ଶିଖିବା ଜନ ନୁହେଁ ମୁହିଁ,
ଅଟଇ ରଙ୍ଗ ନବାବ,
ଆସିଥିଲୁ ତୁମ୍ଭ ରାଣୀଙ୍କ ନିକଟେ,
ଅପର କିଛି ନ ଭାବ ।

ବାର୍ତ୍ତା ଦିଅ ତାଙ୍କୁ ଶୁଣିବେ ସେ ମୋର
ଦୟା ବହୁ କିଛି କଥା,
ଭୁଲ ନ କରିବା ଅଭିପ୍ରାୟ ଥିଲୁ
କଦାପି ନୁହେଁ ଅନ୍ୟଥା ।"

ଶୁଣି ଏହି ଉକ୍ତି ପଶସ୍ତ ପ୍ରହରୀ
'ରକ୍ତ' ହସି ବଙ୍କେଣ୍ଟରେ,
ଜଣାଇଲା ଯାଇ ପ୍ରଣମି ଦେବୀଙ୍କି
"ଶୁଣନ୍ତୁ ମୋ ବାଣୀ ଥରେ ।

[illegible]ର ଶତ୍ରୁ ତବ ଦ୍ୱାରେ ଉପସ୍ଥିତ
ଏକାକୀ ସୈନିକ ବେଶେ,
ପ୍ରକାଶନ୍ତି କିଛି କଥା ଜଣାଇବେ
ସମର ସ୍ଥିର ଉଦ୍ଦେଶ୍ୟ ।"

"ଅସ୍ତ୍ରଶୂନ୍ୟ କର ଆଣି ଆସ ତାଙ୍କୁ"
ଭଷିଲେ ରାଣୀ ଭବାନୀ,
ପ୍ରହରୀ ପ୍ରଣମି, ଫେରି ନବାବଙ୍କୁ
ଜଣାଇଲା ରାଣୀ ବାଣୀ ।

ଅସ୍ତ୍ର ତ ନ ଥିଲା ଲଙ୍କେଶ ହସ୍ତେ,
ଥିଲା ଏକ ତରବାରି
ନ ଚେଳିଲେ ତାକୁ ଶସ୍ତ୍ର ବୋଲି ଜାଣି,
ଶାଣୀ ନ ଥିବାରୁ ଧାର ।

ନମି ସେ ଭବାନୀ ନନ୍ଦନକୁ ଆଗେ
ପ୍ରଣମିଲେ ବିଧିମତେ,
ଧାଇଁଥିଲେ ସେଣୁ ଖଣ୍ଡଶାଣୀ ମନ
ତୋଷିବାକୁ ଦଣ୍ଡବତେ ।

ଏ ସମୟେ ମହା— ବୀର ରଘୁବୀର
ରକ୍ତାକ୍ତଶରୀରେ ଘରେ
ପ୍ରବେଶିଲେ ଶୁଣି ଧର୍ମ-ସୁତା ତାଙ୍କ
ଡଗର ଏକ ମୁଖରେ ।

ପାଇକେ ସମ୍ବୋଧି ହସିଲେ ସୁନ୍ଦରୀ
"ଆସିଛନ୍ତି ବଙ୍ଗପତି
କେଉଁ କାମନାରେ, ପୁଚ୍ଛିବାକୁ ତାତ,
ଡକାଇଥିଲି ତତ୍ପର ।"

ଭବାଣୀ ବଚନୁଁ ଲଜ୍ଜି ରଘୁବୀର
ବଙ୍ଗପାଳ ପରିଚୟ
ନିରୀକ୍ଷଣ କଲେ ଆପାଦମସ୍ତକ
ହେବାକୁ ଜାତ ବିସ୍ମୟ ।

ଯୋଗ୍ୟ ସମ୍ବୋଧନେ          ସମ୍ବୋଧି ବ୍ରାହ୍ମଣ
ପୁଚ୍ଛିଲେ  ବଙ୍ଗ-ଅଧିପେ,
"ଦ୍ୱିଜକୁଳୋଦ୍ଭବ          ହେ ବଙ୍ଗନବାବ,
କି କାର୍ଯ୍ୟେ ଦେଶ ସମୀପେ ?

ସମର ବରଜ          ରଣେ ନ ଗରଜ
ଆସିଛ ଆଜ ଏ ସ୍ଥାନ
କେଉଁ ଅଭିପ୍ରାୟେ,          ବୁଝାଇ କହିବ
କର କି କଷ୍ଟ ସନ୍ଧାନ ?

ମରଣକୁ କପାଁ          କରୁଛ ବରଣ
ଅଗ୍ରତ ଶିବରେ ଆସି ?
ଶ୍ରେୟ ହୋଇଥାନ୍ତା          ସମ୍ମୁଖ ସମରେ
ଦେଇଥିଲେ ପ୍ରାଣ ଝାସି ।

ଧର୍ମେ ସାକ୍ଷ୍ୟ ଦେଇ          ଭବିଥିବ ଆମ୍ଭେ
ନରକେ ନ ଦେବୁଁ ମାଉ,
ଆଚରିଛ କି ହେ          ଜୀବନରେ କେବେ
କର୍ତ୍ତବ୍ୟ ଧର୍ମେ ହକାର ?"

"କର ନାହିଁ ମୁହିଁ          ଅଧର୍ମାଚରଣ"
ଉତ୍ତରଲେ ବଙ୍ଗେଶ୍ୱର,
"ତେଣୁ ହେ ସୁବୀର ,          ଧର୍ମେ ଜୟ ଲଭ
ଆସିଲି ଏଥୁ ସତ୍ୱର ।

ଅକାରଣେ ବେନ ପକ୍ଷରୁ ଅନେକ
ମରୁଛନ୍ତି ରଣେ ଜନ,
ନବର୍ତ୍ତାଇବାକୁ ଆସିଛୁ ଏଠାକୁ
ଉକାୟୁତେ ଦେଇ ଧନ ।

ଲୁଣ୍ଠି କରୁଥିଲେ ଭବାଣୀ ସୈନ୍ୟଙ୍କେ
ଏ ବଙ୍ଗଦେଶ ମୋହର,
ଚଢ଼ାଉ କଲାରୁ ନିରୁପାୟ ହୋଇ
ମୋ ସଙ୍ଗେ କଲେ ସମର ।

ଆବଶ୍ୟକ ନାହିଁ ଏ ରଣେ ତାଙ୍କର,
ସମ୍ପତ୍ତିରେ ଅଧିକାର,
ଇଚ୍ଛାମତ ଧନ ସମର୍ପି ସମସ୍ତୁ
ଫେରାଇବ ଠେଥି ବଗୁର ।”

ଖଣ୍ଡ ଦୋଷାରୋପ ଶୁଣି ହସେ ଦ୍ୱିଜ
ଲଭି ଘୋର ଅପମାନ,
“ଦେଶ ହିତେ, ଜାତି ହିତେ, ସତ୍ୟ ହିତେ
ଏ କାର୍ଯ୍ୟ ଆମ୍ଭର ଜାଣ ।

ଜୀବନ ସମର୍ପି ଏ ପୁଣ୍ୟ କର୍ତ୍ତବ୍ୟ
ଲାଗିଅଛୁଁ ଜାତି ହିତେ,
ଧନୀ ଧନ ହରି ତହିଁ ଲଗାଉଛୁଁ
ବରଜ ବୃନ୍ଦ ସହିତେ ।

ହିନ୍ଦୁବିଦ୍ୱେଷୀଙ୍କୁ ଦଣ୍ଡ ଦେବା ଲାଗି
ଧରନ୍ତୁ ଏ ପୁଣ୍ୟବ୍ରତ,
ଯାଉ ବଙ୍ଗେଶ୍ୱର ବାସନା କୁମ୍ଭର
ରଣେ ହୁଅ ପ୍ରତ୍ୟାଗତ ।"

ପୁନରପି ଧୀରେ ସୁକୋମଳ ଗିରେ
ଭଷିଲେ ବଙ୍ଗାଧିପତି,
"ହିନ୍ଦୁଦ୍ରୋହୀ ସଙ୍ଗେ ସମର ନ ଇଚ୍ଛି
ଯାଇଛି କପାଁ ମୋ ମତି ?"

ଚେତାଇବା ଲାଗି ପୂର୍ବ ଦୋଷାବଳି
ଗାଇଲେ ବ୍ରାହ୍ମଣ ବୀର,
"ଭୁଲି ଯାଇଛ କି ବ୍ରାହ୍ମଣସନ୍ତାନ
ଅତୀତ ପାପ-ତିମିର ?

ଆଦୈ କୁଳଦ୍ରୋହ କର ନାହଁ କି ହେ
କୁଳକୁ ବାହାର ଯାଇ,
ହିନ୍ଦୁଧର୍ମେ ନିନ୍ଦା ଦେଇ, ଅନ୍ୟ ଧର୍ମ
ନେଇଛ ମନେ କି ନାହିଁ ?

ପିତୃମାତୃଧର୍ମ ଆଚର କି ବଙ୍ଗ—
ନବାବ ଆସନେ ବସି
ନ ଥାନ୍ତ ଭାଗ୍ୟରେ ଲେଖା ହୋଇଥିଲେ,
ଅନ୍ୟ ଧର୍ମେ ଗଲ ପଶି ?

ଭାରତୀୟ ଆର୍ଯ୍ୟ— ନାସ୍ତିକ୍ୟେ ଜନ୍ମି
ଅଧର୍ମେ ହୋଇ ଦୀକ୍ଷିତ,
ତହୁଁ ପୁଣି ମହା— ପାପ ଅନୁଷ୍ଠାଇ
ସଞ୍ଚାର ହୁଅ ସନ୍ତାନ ।

ମନେ ପଡ଼େ କି ହେ ସାରଙ୍ଗେଶ-ଅର,
ସମ୍ବଦ-ଅର୍ମୀରେ ସେଷି
କେଉଁ ମହାପାପେ ହସ୍ତ ଦେଇଥିଲ
ନିଷ୍ଠୁର ହିନ୍ଦୁଦ୍ୱେଷୀ ।

ସେହି ପାପରାଶି ମୂର୍ତ୍ତିମନ୍ତ ଆଜ
ହୋଇଛି ଭବାନୀ ବେଶେ,
ତ୍ରାଣ ନେବା ଲାଗି କରିଛି ପ୍ରତିଜ୍ଞା
ତୁମ୍ଭର ହେ ବୀର, ଶେଷେ ।”

ପତିକୁ ପତି ସେ ଚେତା ପଶିଗଲା
ବଙ୍ଗଅଧୀଶ୍ୱର ହୃଦେ,
ଭାବିଲେ “ଏ ମୋର ଅନ୍ତିମ ଉତ୍ସବ,
ବସିଥିଲି ମୁଁ ସୁହୃଦେ ।

ଏହାଙ୍କ କବଳୁ ରକ୍ଷା ନାହିଁ ଆଜ
ଏହି ସେ ସାରଙ୍ଗସୁତା
ଭବାନୀ ନାମରେ ଜଗତେ ଆଖ୍ୟାତ
ଜାଣି ନ ପାରିଲି ମୁଁ ତା ।

ଏହି ଯେ ଗର୍ବିତ ଖାର ମୋ ସଙ୍ଗରେ
କରୁଅଛୁ ସମ୍ଭାଷଣ,
ସମ୍ଭବ ସେହି ସେ ଉଦ୍ଧାରିଛୁ ତାକୁ
ମାରଣ ବାନ୍ଧବଗଣ ।
ପଡ଼ିଛୁ ଏବେ ମୁଁ କାଳ ସମ୍ମୁଖରେ,
ଫେରିବ କପର ପ୍ରାଣେ,
ସେନାପତି ଠାରେ ଦୋଷ ଅର୍ପନ୍ତି ବା
ଏ ବ୍ୟକ୍ତି କି ତା ନ ଜାଣେ ?
ତଥାପି ଉଦ୍ୟମ କରି ଏକ ବାର
କରେ ଆତ୍ମସମର୍ପଣ,
ରଖିଲେ ରଖିବେ ମାରିଲେ ମାରିବେ,
ହେବ ତ ହେବ ମରଣ ।”
ଭାବି ହୃଦେ ଏହା ସୁସାହସ ଧରି
ଭାଷିଲେ ବୀର ବଙ୍କେଶ,
“ଏତେ ଏତେ ପାପ ଅନ୍ୱେଷିଲି ବୃଥା
ମୋହଠାରେ ହେ ବୀରେଶ !
ସମ୍ବଦ-ଅମୀର ନାମେ ସେନାପତି
ଥିଲା ମୋର ବାହୁତଳେ,
ଅଧର୍ମ ଆଚରି ସାରଙ୍ଗ ଧ୍ୱଂସିଲା,
ତଡ଼ା ଖାଇଅଛୁ ବଳେ ।

ନାହି ଅଉ ସେହି ମୋହ ଦରବାରେ
ଆଣି ଅଛୁ ଦକ୍ଷୀଶ୍ୱରେ,
ବୃଥା ମୋତେ କପା ଅପରାଧୀ ବୋଲି
ଦୂଷ ଦେ ତେଜସ୍ୱୀ-ସ୍ୱରେ ?

ମୁ ଅଟେ ନିର୍ଦ୍ଦୋଷ, ସାରଙ୍ଗ ସମରେ
ଦୋଷୀ ସେହି ସୈନ୍ୟଗୁଳ,
ସେଥିଲାଗି ତାକୁ ବର୍ଜନ କରିଛୁ
ଛିଣ୍ଡାଇ ତାର ଜଞ୍ଜାଳ ।

ଆତ୍ମ-ସମର୍ପଣ କରିବାକୁ ଯେହୁ
ଆସିଛୁ ଅସତ ପାଶେ,
ସେ ବା କେଉଁ ଦୋଷୀ ଜୀବନ ଦିଏ ଯେ
ପ୍ରଜାଙ୍କ ହିତ ସକାଶେ ?

ବୃଥା କଳହରେ ପ୍ରୟୋଜନ ନା
ଭାବ ଆସିଲି ଯେ ଭୂପ,
ତାକୁ ଦୋଷୀ ବୋଲି ସାବ୍ୟସ୍ତ କରିବା
ନୁହେଁ କି ଘୋର ତଦ୍ରୂପ ?”

ଯେତେ ଯୁକ୍ତି ଦେଇ କହିଲେ କି ହେବ,
ସର୍ବଜ୍ଞ ପାଶେ କି କେବେ
ମିଥ୍ୟା କଥା କହି ପାରି ହେବ କେହି
ନିକାଳି ବାର୍ତ୍ତା ଯେ ଦେବେ ?

ଅସତ୍ୟ ଶ୍ରବଣେ ଋଷିବର ଜ୍ୱଳି—
ଗଲେ କ୍ରୋଧ-ବୈଶ୍ୱାନରେ ।
ଭାଷିଲେ, "ପାମର ତୁମ୍ଭ ରଡ଼ସ୍ୟାନ୍ତ
ସୃଷ୍ଟି ନୁହେଁ ମୋ ପାଖରେ ।
ତଣ୍ଡ ଦେଇଥିଲ ସେନାବୃଲେ କେଉଁ
ଅପରାଧେ ଭାବ ମନେ,
ତହୁଁରେ ମୋ ପାଶେ ଅସତ୍ୟ ଭାଷିବ
ସତ୍ୟକୁ ରଖି ଗୋପନେ ।
ଜରବ ଏକ୍ଷଣି ଶିରଚ୍ଛେଦ ତୁମ୍ଭ
ଏହି ମିଥ୍ୟା ଅପରାଧେ,
ସୁର ଇଷ୍ଟଦେବ ସ୍ୱର ପୂର୍ବପାପ
ଜୀବନ ନେବ ନିର୍ବାଧେ ।"
ଏହା କହି ଅପି କଲେ ଉତ୍ତୋଳନ
କୁଠାର ଶିରଚ୍ଛେଦନେ,
ସହସା ଉଦାସ କୃଷ୍ଣ ଧର୍ମ ବୋଧ—
ବଥନ୍ତି ମୃଦୁ ବଚନେ—
"ସ୍ମରୁଥ ତାଙ୍କୁ ଯଜ୍ଞାନୁ ସେ ପ୍ରାଣେ,
ନ ମାର ହେ ପିତୃଦେବ !
ବାକ୍ୟ ରକ୍ଷା ଲାଗି ତାଙ୍କ ସ୍ତ୍ରୀ-ଶିର
କାଟିଲେ ଯଥେଷ୍ଟ ହେବ ।"

କନ୍ୟା ଅନୁରୋଧେ ଜବାବେ ନ ମାରୁ
ସ୍ଥମ୍ଭାରେ ନିକ୍ଷେପି ଅସି
କ୍ରୋଧକୁ କ୍ରୋଧରେ ଶାନ୍ତ କରିବାକୁ
ଭୁଲିଲେ ସେ ଗଲେ ବସି ।

ଦୁଃସ୍ୱପ୍ନ-ସାଗରେ ମଜ୍ଜି ବଙ୍ଗେଶ୍ୱର
ନିଜକୁ କଲେ ଧିକ୍କାର,
କୋମଳ-ହୃଦୟା ହିନ୍ଦୁ ନାରୀ ସିନା
ସକଳ ଗୁଣ ଆଧାର !

## ଚକ୍ରାନ୍ତ

ଗୁପ୍ତଚର କେହି କହେ ଆସି ଧୀର
ଅବରୁଦ୍ଧ-ପ୍ରାକାର ପାଶେ,
‘‘ଅକଳଙ୍କ ସୈନ୍ୟ ଆଣି ସତ୍ୟପାଳ
ରହିଁଛନ୍ତି ଯୁଦ୍ଧ ସକାଶେ ।

ପାର ହୋଇଅଛନ୍ତି ଯମୁନାକୁ ସେହି
ଅସୁବିଧା ଥିବା ହେତୁ,
ଭାବନ୍ତି ଭାଙ୍ଗିବ ଦକ୍ଷିଣ ଆସନ
ଯବନର କାଳ-କେତୁ ।

ଜାଣି ସାରିଲଣି ତବ ଆଗମନ
ଶ୍ରେଷ୍ଠ ଦେବ ସୈନ୍ୟ-ଈଶ୍ୱର,
ସଜାଉଛନ୍ତି ସେନା ଦେଶୀ ମୁକ୍ତକେଶୀ
ଉତ୍ତେଜାଇ ଘୋରତର ।

ଅଳ୍ପ କ୍ଷଣ ପରେ ଆସି ଜାଳଦେବ
ଚଣ୍ଡୀରୂପା ସୁକେଶିନୀ,
ବାକ୍ୟ ପର ଭାବ ହୃଦୟ କଠୋର
ଶରତ-ବୋଧଦାୟିନୀ ।

ସୈନ୍ୟ ବଳ ଯାହା ସଙ୍ଗେ ଆଣିଥିଲ
ଭୁଲିଲେ ତା ଏହିବେଳେ,
ବଇଷ୍ଣ ସମର— ବାନ୍ଧବଙ୍କ ସଙ୍ଗତେ,
ପାପ-ରେଖା ହୃଦେ ଖେଳେ ।"

ସର କାହିଁ କଥା ଚର ମୁଖୁଁ ଏହି
ସମୟେ ଶୁଭିଲ ଧ୍ୱନି,
'ଜୟ ମୁକ୍ତକେଶୀ' 'ଜୟ ଜାଠପତି'
'ଜୟ ମା ହିନ୍ଦୁ-ଜନନୀ !'

ଆକାଶ ଫଟାଇ ଗର୍ଜ୍ଜିଲ ଉଠଇ
'ଜୟ ମା ଭାରତମାତା,
ଯାହା ହୃଥ ବାରେ ତୋହର ସାହାଯ୍ୟ
ହେବୁଁ ଆଜ ତୋର ଦାତା ।'

ଜୟଧ୍ୱନି କମେ ଘୋରୁଁ ଘୋରତର
ନିକଟୁଁ ନିକଟତମ
ଶୁଣି ସବିସ୍ମୟ ଦିଲ୍ଲୀ ସୈନ୍ୟେଣଙ୍କ
ଭାଙ୍ଗିଗଲା ପୂର୍ବ ଭ୍ରମ ।

ଭାବିଥିଲେ 'ଜାଠ ଡକାୟିତ ଦଳ
ଆସିଛି' ବୋଲି ସିନା ସେ,
ଜନରବ ସଙ୍ଗେ ଗୁପ୍ତଚର ବାଣୀ,
ସତ୍ୟ ହିଁ ପାଶେ ପ୍ରକାଶେ ।

ତୁମ ଯିବା ସଙ୍ଗେ ଭଗ୍ନ ଅସି କର
ହୃଦୟରେ ପଦାଘାତ,
ତଥାପି ସାହସ ଅବଲମ୍ବି ଶୂର
ଧରିଲେ ତୂଷ୍ଣ ବଖ୍ୟାତ ।

ବଜାଇଲେ ସେହା— ହୃଦ ପ୍ରକମ୍ପାଇ
ମନ୍ତ୍ର ଅବ୍ଧୁସ-ସତାର,
ସଙ୍ଗେ ସଙ୍ଗେ ସୈନ୍ୟେ କଲେ ଜୟରବ
ମେଘ ଗର୍ଜନ ପ୍ରକାର ।

ଗୁଳି ବରଷିଲା ଉଭୟ ପକ୍ଷରୁ
ମାତ୍ର ପ୍ରହରକ ପରେ
ସେନାପତି ସହ ଯବନ ସୈନ୍ୟକେ
ତେଜିଲେ ପ୍ରାଣ ସମରେ ।

ପଳାଇ ଯାଇ କେ ନମି ଉଷ୍ଣୀଷରେ
କହିଲା ଦୁଃଖବାରତା,
"ପ୍ରଭୁ ! ସେନାପତି ରଣେ ହେଲେ ହତ
କରନ୍ତେ ନାଠ ଶଠତା ।

ଆଉ କାହାରିକୁ ପଠାନ୍ତୁ ତା ପାଶେ
ବହୁ ସୈନ୍ୟବଳ ଦେଇ,
ମାରି ନାଠଗଣେ ଧରି ସତ୍ୟପାଳେ
ଏଠାକୁ ଆସିବ ନେଇ ।"

ସହସା କମ୍ପିତ    ହୋଇଣ ଦୁଃଖିତ
ସେ ମୋଗଲ ବାଦଶାହ
କହିଲେ ସଭରେ    "ତନ ସେନାସ୍ଥଳ
ଗ୍ଳଲଗ୍ଲୁ ସୈନ୍ୟ-ପ୍ରବାହ ।"

ସଙ୍ଗେ ସଙ୍ଗେ ଆଜ୍ଞା    ପାଳନେ ସଚିବ
ସୁଦକ୍ଷ ତନ ସେନାଣୀ
ଡାକ ଆଦେଶିଲେ    "ଯାଇ ବେଗେ ରଣେ
ଜାଠଙ୍କୁ ପକାଅ ହାଣି ।"

ଆଜ୍ଞାମାନେ ସାର—    ଶ୍ରେଷ୍ଠସେନ୍ୟ ଯାଇ
ସଜାଇ ବଳିଷ୍ଠ ସେନା
ଚଳାଇଲେ ଯବ    ନିଜ ଥାଟେ ଦେଖି
"ଆମ୍ଭଙ୍କୁ କେହୁ ପାରେ ନା ।

"କାଳଥା ବରୁଡ଼    ପ୍ରାୟ ମାଡ଼ିଯିବା
ଉଡ଼ିବା ପୀତ-ବରୁଡ଼,
ପାଗ୍ଦଳ ହୋଇ    ଧାଳ ଠୁଙ୍କି ଦେବା
ଜାଟଙ୍କୁ ଯଥା ପିମ୍ପୁଡ଼ି ।"

କେତେ ପରକାରେ    କରନ୍ତି ଚକ୍ରାନ୍ତ
କେମନ୍ତେ ଜାଣିବେ ଅର,
କେହୁ କହେ "ଏକ    ଢଗୁଁ ଅକ୍ରମିବା
ପଳାଇବେ ଦେଖି ଡର ।"

ଅପର ଭାଷଇ "ବୃତ୍ତାକାର ବ୍ୟୂହ
ରଚିବା ଅଟେ ଉଚିତ,
ଭେଦ ନ ପାରିବେ ଜାଠେ ଆମ୍ଭ ମଧ୍ୟେ
ନ ଫେରିବେ କେ ଜୀବତ ।"

ଭାଷିଲା ତୃତୀୟ "ସବୁଠାରୁ ଶ୍ରେୟ
ଅଟଇ ମୋ ସୁମନ୍ତ୍ରଣା,
ମାରଣା ପ୍ରକୃତ ଦେଖାଇବା ଯେଣୁ
ଜାଠେଣ ଅଟେ ମାରଣା ।

ସମ୍ମୁଖ ଦଗରୁ ଜଣେ ଆକ୍ରମିବ,
ଦୁଇଜଣ ଦୁଇପାଶେ
କାଳନ୍ଦୀ କୂଳରେ ଗମି ଆକ୍ରମିଲେ
ମରିବ ଶତ୍ରୁ ହତାଶେ ।

ଘେରିଯିବା ଶୀଘ୍ର ଚଉପାଶେ ଶୁଣି
ପରସ୍ପର ତୂର୍ଯ୍ୟ ସ୍ୱନ,
ମଧ୍ୟେ ରୁଦ୍ଧ ଜାଠ— ଅଧିପତି ନଷ୍ଟେ
ତେଜିବ ଦିବ୍ୟ ଜୀବନ ।

ପଦାତିକ ଯିବେ ଆଗେ ତାଙ୍କ ପଛେ
ଅଶ୍ୱାରୋହୀ ଗଜାରୋହୀ,
ସର୍ବ ପୃଷ୍ଠେ ଯିବେ ଶକଟଗୁଳକେ
ଅସ୍ତ୍ର ଶସ୍ତ୍ର ଆଦି ବୋହି ।

ଏହିପରି ହାକେ ଗୁରୁଧାଡ଼ି ହୋଇ
ବେଢ଼ିଯିବା ଜାଠଗଣେ,
ବାଟ ନ ଛାଡ଼ିବା ପଳାଇ ଯିବାକୁ
ହେଲେ ହେଁ ତହିଁରୁ ଜଣେ ।"

କଲେ ଅଙ୍ଗୀକାର ଏହି ମନ୍ତ୍ରଣାରେ
ଅନ୍ୟ ଦୁଇଜଣ ଯେଣୁ,
ଦୁଇ ଶାଖା କରି ଦେଲେ ସୈନ୍ୟ-ସ୍ରୋତେ
ବନାଇଣ ସାରବେଣୁ ।

ଶତ୍ରୋତ୍ପଳା ଯଥା ଦୁଇଧାର ହୋଇ
ଧାବଇ ଯେଉ 'କଣ୍ଟକେ'
ତେସନ ଯବନ ସେନାଏ ଗମିଲେ
ପକାଇ ପଦ ଛଟକେ ।

ଦୁଇ ଧାର ଦୁଇ ପାଶେ ଚଳି ଶେଷେ
ଯମୁନା-କୂଳେ ପ୍ରବେଶି,
ପରସ୍ପର ମୁଖେ ଖରେ ଖରେ ଗଲେ
ଏକକୁ ଅନ୍ୟ ଅନ୍ୱେଷି ।

କ୍ରମେ ଏହିପରି ଘାଟ ଜଗି ସାରେ
ଘେରିଗଲେ ଜାଠଦଳେ,
ଚାରି କୋଣେ ଚାରି ସେନାପତି ରହି
ଝୁଲନ୍ତି ସୈନ୍ୟସକଳେ ।

ସୟଦ-ଅମୀର ଶେଖ-ମିର୍ଜାଙ୍କର
ଯମୁନା ଅଦୂରେ ରନ୍ଧ୍ର
ଅନ୍ୟ କୋଣାଶ୍ରିତ ଶେଖ-କାସୀମଙ୍କୁ
ତୂର୍ଯ୍ୟ ସ୍ୱନେ ଦେଲେ କହି—
"ଆକ୍ରମଣ କର ଘୋର ଜୟରବେ,
ଧ୍ୱଂସିଦିଅ ଜାଠଗଣ,
ଆମ୍ଭେ ତୁମ୍ଭେ ଏଣେ ହେଲୁଣି ଉଦ୍ୟତ
ଯୁଝିବାକୁ ପ୍ରାଣପଣ ।"

# ବାରାଣସୀ

"କାଶୀଧାମ ଦେଖ ! ଅଟେ ଏ ନଗର
ହିନ୍ଦୁ ଶ୍ରେଷ୍ଠ ଶିବପୀଠ,
ଜହ୍ନୁକୂଳ-ମୌଳି— ମଣ୍ଡନ ନଗରୁ
ମଣିଲେ ଏଥୁ ଜନସ୍ତ ।

ମହା ଦାନଶୀଳ ନୃପ ହରିଶ୍ଚନ୍ଦ୍ର
ପ୍ରସିଦ୍ଧ ଧର୍ମ-ରକ୍ଷତ
ଏହି ସ୍ଥାନେ ଅସି ସତ୍ୟ ରକ୍ଷା ଆଣେ
ଶ୍ମଶାନେ ହେଲେ ଆଶ୍ରିତ ।

ଶୁକ୍ଳ ଅଦାୟର ଭାର ନେଇ ଧନ୍ୟ
ଭୂମି ଏ ଶ୍ରୀମ ଶ୍ମଶାନ
ଦାନର ଦକ୍ଷିଣା ପରିଶୋଧ ଆଣେ
ପୂତ କଲେ ଏହି ସ୍ଥାନ ।

ଧର୍ମ ମଧ୍ୟେ ଏହା ନୁହଇ ଗଣିତ
ସାକ୍ଷାତ ସ୍ୱରଗପୁର,
ସେଥିଲାଗି ଏଥି ଥିଲେ ହରିଶ୍ଚନ୍ଦ୍ର
ପୁଣ୍ୟଶ୍ଳୋକଙ୍କ ଉଦ୍ଧର ।

ଏହି ଧାମେ ଯାର ହୁଅଇ ମରଣ
ଯାଏ ସେହି ଶିବ-ଲୋକେ,
ପୁରାଣେ ଲିଖିତ ଧରଣୀବିଖ୍ୟାତ
ଅତୁଲ୍ୟ ଏ ତିନ ଲୋକେ ।

ସମର-ବିଜୟୀ ଦ୍ୱିଜ ରଘୁବୀର
ତୀର୍ଥକୁ ବଢ଼ାଇ ହସ୍ତ,
ରମ୍ୟ ବାରାଣସୀ ଦେଖାନ୍ତି କନ୍ୟାଙ୍କୁ
ଶୁଣନ୍ତି ସୈନ୍ୟ ସମସ୍ତ ।

ଗଙ୍ଗା ବକ୍ଷ ଭରି ଭବାନୀ ପୋତରେ
କେନ୍ଦ୍ରଗତ ଥିବା ଯାଏ,
ରଣଚଣ୍ଡୀ ବୋଲି ଉଡ଼େ ଫର ଫର
ନିଶାଣ ହୁରୁଁ ଜଣାଏଁ ।

ଏକାଳେ ସୁଦୂରେ ଦେଖାଗଲା ଏକ
ଦ୍ରୁତଗାମୀ କ୍ଷୁଦ୍ର ନାବ,
ସକଳେ ସ୍ତମ୍ଭିଲେ ଅନିମେଷ ନେତ୍ରେ,
ଜନ୍ମିଲା ହୃଦେ କି ଭାବ ।

କ୍ରମେ ବୃଦ୍ଧି ହୁଏ ତରଣୀ ଆକାର
ନିକଟକୁ ଆସେ ଯେତେ,
ଗତି ମଧ୍ୟ ତାର ଚଞ୍ଚଳ ଅସ୍ଥିର
ଅନୁମିତ ହୁଏ କେତେ ।

ନାବ ବେନ ପ୍ରାନ୍ତେ ବସିଛନ୍ତି ଦୁଇ
ଆପେକ୍ଷା କ୍ଷେପଣୀକରେ,
ଜଣକ ମସ୍ତକେ ଦସ୍ତାନେ ପଗଡ଼ି,
ଅପର ଶୂନ୍ୟମୁଣ୍ଡରେ ।

ସମ୍ମୁଖ ପାଖରେ ଅନାବୃତ ମୁଣ୍ଡ
ଅନ୍ୟ ପାର୍ଶ୍ୱେ ଅନ୍ୟ ଶିର,
ଅଗ୍ର ବ୍ୟକ୍ତି ହସ୍ତ ସଦା କାର୍ଯ୍ୟବ୍ୟସ୍ତ,
ଅପରର କର୍ମ ଧୀର ।

ଏଥୁଁ ସମ୍ଭବତ ପ୍ରଥମ ନାବିକ,
ଦ୍ୱିତୀୟ ବ୍ୟକ୍ତି ଯାତ୍ରିକ,
ଆବଶ୍ୟକ ବେଳେ ଆଣ୍ଠୁଲି ପକାଏ,
ଉଭୟେ ଅତି ନିର୍ଭୀକ ।

ପାର୍ଶ୍ୱବର୍ତ୍ତୀ ହେଉଁ ଜଣାଗଲା ଏକ
ଅଟେ ଅତି କୃଷ୍ଣକାୟ,
ଅପର ମାନବ ଶ୍ମଶ୍ରୁ-ଭୂଷିତ
ଗୌରଅଙ୍ଗ ବଳକାୟ ।

ପଶ୍ଚାତ ବ୍ୟକ୍ତି ଆସନ୍ତ ବସ୍ତ୍ରର
ଗୁଡ଼ିଁ ଥିଲେ ରଘୁବୀର,
ଅନୁମାନ ସତ୍ୟ ଜାଣିଲେ ଦେଖନ୍ତେ
ଶ୍ମଶ୍ରୁ-ଭୂଷିତ ଶିର ।

ଉତ୍କଣ୍ଠିତ-ହୃଦେ ଅପଲକ-ନେତ୍ରେ
ଧର୍ମ ସୁତା ସଙ୍ଗେ ବପ୍ର
ପଗଡ଼-ମଣ୍ଡିତ ବ୍ୟକ୍ତିକୁ ଗୃହିଁଲେ,
ତରଣୀ ଆସିଲା କ୍ଷିପ୍ର ।

ଲାଗିଲା ବ୍ରାହ୍ମଣ ଜାହାଜକୁ ସେହୁ
କ୍ଷୁଦ୍ର ନାବଖଣ୍ଡି ଖରେ,
ପ୍ରଣମିଲେ ବେଦ ଆଗନ୍ତୁକ ବ୍ୟକ୍ତି
ଭବାନୀ, ସାର ପଦରେ ।

ବାନ୍ଧି କ୍ଷୁଦ୍ର ନାବ ତରଣୀ ଅଙ୍ଗରେ
ନାବିକ ରହିଲା ଚହିଁ,
ଗୌରଙ୍ଗ ଉଠିଲା ଭବାନୀ ଜାହାଜେ
'ଜୟ ମା ଭବାନୀ' କହି ।

ରଘୁନାଥ ପାଶେ ଉଭା ହୋଇ ନତ
ଜାହାଣୀ! ଭଲ ଗାୟକ,
"ପ୍ରଭୁ, ଅନୁକୂଳ କାଳ ଉପସ୍ଥିତ
ସତ୍ୱର କର ଗମନ ।

ଆଗ୍ରା ନଗରରେ ତୁମୁଳ ସଂଗ୍ରାମ
ସମ୍ରାଟ-ଅମୀର ସଙ୍ଗ
ଜାଠ-ନରପତି କରେ କି ଉପେକ୍ଷେଣ୍ୟ
ଏବା ସ୍ୱର୍ଣ୍ଣ ଅବସର ।

ଦ୍ୱିଭୁଜ ଆକାରେ ବ୍ୟୂହ ରଚି ଦୁର
ଯବନ ଜାଠ-ଅଧିପେ
କାଳିନ୍ଦୀ କୂଳରେ ଘେରିଥିଲୁ ନେଇ
ସୈନ୍ୟ ତୁରଙ୍ଗମ ଦ୍ୱିପେ ।

ଯମୁନା ଗରଭେ ତରଣୀ ଚଳାଇ
ଶୀଘ୍ର ଗଲେ ଖରବର,
ଅସ୍ତ ଜାଣିବା ଜାଠେ ଉଦ୍ଧାରିବା
ବିଶ୍ୱାସ ହୁଏ ମୋହର ।"

ଗୁପ୍ତଚର ମୁଖୁଁ ଏହା ଶୁଣି ଖର
ଆଦେଶିଲେ ପୋତସ୍ଥଳେ,
"ଶୀଘ୍ର ବାହ ତରୀ ଯମୁନାଉମୁଖେ,
ମରିବ ଶତ୍ରୁ ଏକାଳେ ।"

ଅତି ଦ୍ରୁତେ ଚଳେ ପୋତପନ୍ତି ଲକ୍ଷ
ଉନ୍ମାଦନା ଅନୁପମ,
ଦେଖାଇବେ ବୋଲି ଯବନ ସମ୍ମୁଖେ
ବଳ ବୀର୍ଯ୍ୟ ପରାକ୍ରମ ।

କିଛୁ କାଳ ପରେ ଜାହ୍ନବୀ-ଯମୁନା—
ସଙ୍ଗମ-ସ୍ଥଳେ ସକଳେ
ପ୍ରବେଶି କାଳିନ୍ଦୀ ମଧ୍ୟରେ ଗମିଲେ
ନିରେଖି ନିର୍ମଳ ଜଳେ ।

ମୃଣାଳ-ତରଙ୍ଗ— ଶିର ସ୍ଥାନେ ସ୍ଥାନେ
ଶୁଭ୍ରେ ହୋଇ ପରଣତ
ଧରଣୀ-ବନିତା— ବେଣୀପରେ ରୌପ୍ୟ—
ଝୁମ୍ପର ଖଚିମନ୍ତ ।

ହଂସାବଳି ତହିଁ ସନ୍ତର ଖେଳନ୍ତି
କେଶେ ଖଞ୍ଜା ତାରାସମ,
କୁହୁ ସ୍ୱନ ସଙ୍ଗେ ହଂସାଳି କଳସ୍ୱନ
ମୋଦ ଦିଏ ଅନୁପମ ।

ଥୋମଣି ଉଠାଇ ବିକାଶନ୍ତି ଶୋଭା
ଖଳୁରଦ ମତ୍ସ୍ୟପନ୍ତି,
ଜଳକାକେ କାହିଁ ଥଣ୍ଟେ ମୀନ ଧରି
ସ୍ରୋତ ସଙ୍ଗେ ସନ୍ତରନ୍ତି ।

ଅପୂର୍ବ ସୁଷମା ଦେଖି ଦେଖି ଶୂରେ
ଜାହାଜ ସାହାଯ୍ୟେ ଗମି
ପ୍ରବେଶିଲେ ଆଗ୍ରା ସହର ଅଦୂରେ
ବୀର୍ଯ୍ୟବନ୍ତ ପରାକ୍ରମୀ ।

କ୍ରମେ ଶୁଣାଗଲା ଜମାଣ ଶବଦ
ଶୁଣି ସର୍ବେ ପୁଲକିତ,
ବୀରରସ ଆସି ବୀରବର୍ଗ-ହୃଦେ
ହେଲା କିବା ପ୍ରବାହିତ ?

ଏକାଳେ ବ୍ରାହ୍ମଣ ଆଦେଶିଲେ ସର୍ବେ
"ପୋତକୁ ଲଗାଇ ଘାରେ
ସୁସଜ୍ଜିତ ହୁଅ, ତୂରୀ ସ୍ୱନ ଶୁଣି
ସକଳେ ଉଠିବା ଷଣେ ।

କରିବା ସମର, ଫଟାଇବା ବ୍ୟୂହ
ଯବନର ସର୍ବେ ମିଳି,
କୁମ୍ଭୀର ପସ୍ତୁ ଜଳଗର୍ଭୁଁ ଉଠି
କୂଳଗାବେ ଦେବା ଗିଳି ।"

ଆଦେଶ ପାଳନ ହେଲା ସେହିକ୍ଷଣି
ସଶସ୍ତ୍ର ସୈନିକବର୍ଗ
ବଜସ୍ତୁ-ଉଲ୍ଲାସେ ଆକ୍ରମିଲେ ଉଠ
ରଣକ୍ଷେତ୍ରେ ମଣି ସ୍ୱର୍ଗ ।

ପୂରିଗଲେ ରଘୁ— ବୀର ସୈନ୍ୟଗଣ
ସୁନୀଳ ସମୁଦ୍ରକୂଳେ
ଅଶ୍ୱପୃଷ୍ଠେ ଚଢ଼ି ନାଶିବାକୁ ଶତ
ଯବନ ସେନା ସମୂଳେ ।

# ମିଳନ

ନିଦ୍ରା-ଅଭିଭୂତ          ଜାଠେଣ ସୈନକେ
ଜୟ ଶାନ୍ତି ଲଭି ପରେ,
ଏକାଳେ ସହସା          ଯବନ ଯୋଦ୍ଧାଏ
ଘେରିଲେ ଚଉପାଶରେ ।

ଉଠିଲେ ଜୟ ରବ          ଆକାଶ ଫଟାଇ
ପ୍ରକମ୍ପାଇ ବସୁନ୍ଧରା,
ନିଦ୍ରା ଭାଙ୍ଗିଗଲା,          ହିନ୍ଦୁ ସୈନ୍ୟବୃନ୍ଦ
କ୍ଷଣେ ହେଲେ ଆତ୍ମହରା ।

ମେଘ କୋଳୁଁ ଯଥା          ଚପଳା ବାହାରି
କରଇ ଘୋର ଗର୍ଜନ
ତଥା ସେ ଶିବିରୁଁ          ମୁକ୍ତକେଶୀ ଆସି
ଶୁଣାଇଲା ଭେରୀ ସ୍ୱନ ।

ଡାକ ଦେଲା ଉଠ          ଆର୍ଯ୍ୟଯୋଧବୃନ୍ଦ,
ବୀରରସେ ହୋଇ ସ୍ନାତ,
ଆସିଲାଣି ପୁଣି          ସଦଳେ ଅରାତି,
କର ହସ୍ତ ଶୂଳପାତ ।

ନାଶ ନାଶ ବେଗେ ନ ରଖ ହେ ବୀରେ,
ଜୀବନ୍ତ ମୁସଲମାନ,
ଅର୍ଯ୍ୟବାଳା ସ୍ୱୈର ଅପରାଧେ ଶୀଘ୍ର
ରମ୍ଭାବୃକ୍ଷପ୍ରାପ୍ୟ ସ୍ଥାନ ।

ପଦ୍ମ-ବ୍ୟୂହେ ବୀରେ ହୁଅ ସନ୍ନିଭୂତ
କେଶରେ ରଖି ସ୍ୱଜନେ,
ପ୍ରତି ପାଖୁଡ଼ାରେ ଜଣେ ଜଣେ ରହ
ନାୟକ ସେନା ସ୍ୱଳନେ ।

ମଧୁ-ମକ୍ଷୀ ଯଥା ଏଣେ ତେଣେ ଉଡ଼ି
କ୍ଷଣେ କେଶରକୁ ଆସେ,
ତଥା ମୁଁ ସର୍ବତ୍ର ବୁଲି ଆସି ପୁଣି
ପଶୁଥିବି ନୃପ ପାଶେ ।

ସକଳ ହୃଦୟେ ଭରି ଦେଉଥିବ
ଊର୍ଜ୍ଜ ସ୍ୱରେ ବୀର-ରସ,
ବୀର-ବେଶ ଧରି ସକଳେ ହୁଙ୍କାରି
ନାଶିବା ଅରି ଅବଶ୍ୟ ।

ତ୍ରିଭୁଜ ଆକାରେ ବ୍ୟୂହ ରଚିଅଛୁ
ନଶ୍ୱର ଦୁଷ୍ଟ ଯବନ,
କୋଣ ଶୃଙ୍ଗମାନ ବାହୁଠାରୁ ଦୂର,
ସେନାଙ୍କ ତହିଁ ଶୋଭନ ।

ଶଙ୍ଖ ଦଗୁଁ ଯେଉଁ ଗୁଳା ଆସୁଥିବ
ନିବାରିବ ତା କେବଳ,
ବାହ୍ମ ଢଗ ଗୁଳା ନିବାରଣ ସଙ୍ଗେ
ନାଶିବ ଶତ୍ରୁ ସକଳ ।

ଫଟାଅ ହେ ବୀରେ, ଅଗ୍ରେ ବାହୁମାର୍ଗ
ଦ୍ରୁଅନ୍ତୁ ସେ ଛିନ୍ନ ଭିନ୍ନ,
ଦ୍ୱନ୍ଦ୍ୱ ରଣଙ୍ଗଣେ ମାର ଶତ୍ରୁ କର
ଆଗ୍ନେୟ ଅସ୍ତ୍ର ବିକୀର୍ଣ୍ଣ ।”

ଆକ୍ଷମାନେ ସର୍ବେ ପଦ୍ମବ୍ୟୂହ ରଚି
ଯବନ-ନାଶନ-ବ୍ରତେ
ନିଜ ନିଜ ସ୍ଥାନେ ଧରି ପ୍ରାଣ ଦୃଢ଼େ
ଯୁଝିଲେ ଅରି ସଙ୍ଗତେ ।

ଲାଗିଲୁ ସମର ଦୁଇ ଦଳ ମଧ୍ୟେ
ଏ ସମୟେ ନକ୍ଷତ୍ରରେ
ଆସି ଚୂର୍ଣ୍ଣ ହେଲେ ଅରି ପୃଷ୍ଠ ଦେଶେ
ଭବାଙ୍ଗ-ସୁନ୍ଦର ବୀରେ ।

ଚଳାଇଲେ ଶୀଘ୍ର ଆଗ୍ନେୟ ନାଳୀକ
ଯହୁଁ ଶତ୍ରୁ ସୈନ୍ୟ ଲକ୍ଷି,
ଅନାଇଲେ ଶତ୍ରୁ ସୈନିକେ ପଶ୍ଚାତେ
ଚକିତେ ଫେରିଲ ଅକ୍ଷି ।

ସସମ୍ଭ୍ରମେ ତୂର୍ଯ୍ୟ ଧ୍ୱନି ବଜାଇଲେ
ସୟଦ-ଅମୀର ଭ୍ରାନ୍ତି,
"ହେ ଶେକ୍-କାଶିମ ! ଆସିଲେଣି ପୃଷ୍ଠେ
ହିନ୍ଦୁ ସୈନ୍ୟ ଗଣି ଗଣି ।

ଗୁଲଜଥ ସୈନ୍ୟ ଉଭୟ ପାର୍ଶ୍ୱରେ,
ନିଜେ ଯାଇ ମିର୍ଜାଫରେ
ସାହାଯ୍ୟ ପ୍ରଦାନ କରିବ, ହିନ୍ଦୁଏ
ଆସିଲେଣି ବହୁତରେ ।"

ଚଲାଇ ସୈନ୍ୟକେ ଭେଷ୍ଣ ସ୍ୱନ ଶୁଣି
ଝହୁର ଶେକ୍-କାଶିମ
ଶେଷେ ନିଜେ ମିଳ ଶେକ୍-ମିର୍ଜାଫରେ
ରଖିଲେ ବାମେ ପଶ୍ଚିମ ।

ଅର୍ଦ୍ଧେ ସୈନ୍ୟ ମୁଖ କଲେ ଜାଠ ଦଗେ,
ଅନ୍ୟାର୍ଦ୍ଧ ଭବାଣୀ ପ୍ରତି,
ମଧ୍ୟେ ପଥ ରଖି ଅଶ୍ୱେ ଭ୍ରମି ସୈନ୍ୟ
ଚଲାଇଲେ ସେନାପତି ।

ଲାଗିଲା ଭୀଷଣ ସମର ସେ ଦିନ
ହିନ୍ଦୁର ଯବନ ସଙ୍ଗେ,
ମଲେ ବହୁତର ସୈନ୍ୟ ଦେନ ପକ୍ଷୁଁ
ସେ ମହା ଭୀଷଣ ରଙ୍ଗେ ।

ଜୟ ରବ ଉଠେ ତିନ ମହାଦଳୁଁ
ମାର ମାର ଶବ୍ଦ ସହ,
ଧନ୍ୟ ବୀର-ଶ୍ରୋତ, ନ ଫାଟେ ଗର୍ଜନେ
ଅପର କର୍ଣ୍ଣେ ଦୁଃସହ ।

ବିପକ୍ଷେ ଧିକ୍କାର ସ୍ୱପକ୍ଷେ ଉତ୍ସାହ
ବଚନ ଭାଷି ସେନାନୀ
ରଣ ରକ୍ଷା ଅର୍ଥେ କର୍ତ୍ତବ୍ୟ ସାଧନ୍ତି
ଧନ୍ୟ ବୀର ଅଭିମାନୀ ।

ସମସ୍ତଙ୍କଠାରୁ ଅଧିକ ଗର୍ଜିଲ
ଭବାନୀ ସମରେ ଆଜ,
"ହିନ୍ଦୁ ସୈନ୍ୟ ବୃନ୍ଦେ ! ପ୍ରାଣପଣେ ଲଢ଼
ଶତ୍ରୁ ଧୈର୍ଯ୍ୟ ଦିବ ଭାଜ ।

ଧର୍ମବଳେ ଯୋଧେ, ଜିଣିବ ଏ ଯୁଦ୍ଧେ
ଅଧର୍ମବଳେ ଯବନ
ତୁମ୍ଭର ଶ୍ରୀହସ୍ତେ ଅତି ଅଳ୍ପକ୍ଷଣେ
ତେଜିବ ଦିବ୍ୟ ଜୀବନ ।

କ୍ରୋଧ ମାତା ମୋର ହୁଅନ୍ତେ ପ୍ରବଳ
ନୀରବେ ଏତେ ଦିବସ
ରହି ଯାଇଥିଲି, ଆଜ ଜଳାଇବ
ତା ବଳେ ଅରି ଅବଶ୍ୟ ।

ଯେତେ ଅତ୍ୟାଚାର କରେ ହିନ୍ଦୁ ପ୍ରତି
ଅସହ୍ୟ ହୁଏ କଥନେ,
ଜିଜିୟା ବସାଇ ବାଧ୍ୟ କରାଉଛି
ନଜର ଧର୍ମଗ୍ରହଣେ ।

ହିନ୍ଦୁ ରମଣୀକୁ ଘରଣୀ କରନ୍ତି
ବଳାତ୍କାରେ ସେ ଦୁରନ୍ତ,
ହିନ୍ଦୁ ରାଜ୍ୟପାଳ ରାଜତ୍ୱକୁ ହରି
ନିଜେ ହୁଏ ଭାଗ୍ୟବନ୍ତ ।

ସୀମା ଅତିକ୍ରମ କଲଣି କଷ୍ଟ
ମୁସଲମାନର ଖାରେ !
ରକ୍ଷା ନାହିଁ ଆଉ ପାପିଷ୍ଠର ଭବେ,
ବୁଡ଼ୁଛନ୍ତି ପାପ-ତମିରେ ।

ନାଶ ନାଶ ବେଗେ ଅସୁର କୁମ୍ଭର
ଦିଅ ହେ ସୁଯୋଗ୍ୟ ଦଣ୍ଡ,
ତା ମୁଖ ଦର୍ଶନେ ଅତ୍ୟାଚାର ସ୍ମୃତି
ହୃଦ କରେ ଶତ ଖଣ୍ଡ ।

ନ ରଖ ଭାରତେ ଗୋଟିଏ ଯବନ
ତା ଶୋଣିତେ କର ଶତା,
ଯା କବଳେ ପଡ଼ି ମୋ ଲାଗି ପରାଣ
ହରାଇଲେ ଭ୍ରାତା ପିତା ।

ଦୋଷଘ୍ନିନୀ ଉମା ଅସ୍ତ ପ୍ରଭାବେ
ମୋ ଲଗି ଯୁଦ୍ଧ ସଂସାର
ପାଗଳିଣୀ ପ୍ରାୟେ କାନ୍ଦି ବୁଲୁଥିଲୁ
ନ ମିଳେ ସନ୍ଧାନ ତାର ।

ହିନ୍ଦୁଙ୍କ ରକ୍ଷଣେ ପଣ କର ହିନ୍ଦୁ
ନାଶ ହିନ୍ଦୁ ଅରି ହସ୍ତ,
ହିନ୍ଦୁ ପ୍ରାଣେ ଆଜ ମିଳିଛି ସୁଯୋଗ
ପାପଘ୍ନିନୀ ହେଉ ଧନ୍ୟ ।"

ରଣମଦମତ୍ତ ସକଳ ସେନାଏ
କି ଯବନ କିବା ହିନ୍ଦୁ,
ପିଉଛନ୍ତି କି ସେ ମକରନ୍ଦ ରଣ—
ଚଣ୍ଡୀ-ପଦ ଅରବିନ୍ଦୁ ?

ଲାଗିଲା ସଂଗ୍ରାମ ବହୁବେଳ ଯାଏ,
ମଲେ ବୀର ଅଗଣିତ
ଉଭୟ ପକ୍ଷରୁ, ରଣାଙ୍ଗନ ଏବେ
ଶ୍ମଶାନେ ହେଲା ଗଣିତ ।

ଏକାଳେ ସହସା ଅଦୂରେ ଶୁଭିଲା
ଜୟ ଧ୍ୱନି ଘୋରତର,
ଉଡ଼ିଲା ବିଜୟ— ପତାକା ଊର୍ଦ୍ଧ୍ୱରେ
ଭରତପୁରେଶ୍ୱରର ।

ସଙ୍ଗେ ସଙ୍ଗେ ମଧ୍ୟ ଶୁଭିଲା ଶବଦ
ଜୟ ଜୟ ମୁକ୍ତକେଶା,
ଜୟ ସଖୀ-ଶତ୍ରୁ — ସଂହାରଣୀ ଜୟ
ଯବନନାଶିନୀବେଶା ।

'ଜୟ ସଖୀ-ଶତ୍ରୁ— ସଂହାରଣୀ' ଶବ୍ଦ
ଶୁଣନ୍ତେ ଦେଖା ଭବାନୀ
କ୍ଷିପ୍ରେ ଚଳାଇଲେ ନିଜ ତୁରଙ୍ଗମେ
ପାଳକ ପିତା ଆହ୍ୱାନ ।

ବେଗନଏ ଧାଇଁଲେ ଶବ୍ଦଭେଦୀ ଶର
ପରସ୍ପେ ମୁହୂର୍ତ୍ତି ମାଝେ
ଉଲ୍କା ଧାଏଁ ଯଥା ଗଗନ ମାର୍ଗରେ
ଶୋଷଣ ତାମସୀ ମଝେ ।

ସେନାନୀ ମରଣେ ରଣ ଛାଡ଼ି ଭୟେ
ପଳାଇ ଗଲେ ଯବନେ
କଏ କେଉଁ ଦଗେ ହୋଇ ଅସ୍ତବ୍ୟସ୍ତ
ନ ରହିଲେ ସୁଦ୍ଧା ଜଣେ ।

ସହଜେ ଗମିଲେ ରଘୁବୀର ସଙ୍ଗେ
ଭବାନୀ ସାରଙ୍ଗ-କନ୍ୟା,
ଦେଖିବାକୁ କଏ ନାରୀ ଶତ୍ରୁ ଧ୍ୱଂସି
ଭାରତେ ହୋଇଲ ଧନ୍ୟା ।

ଚକ୍ରବର୍ତ୍ତିନୀ ହୃଷ୍ଟଚିତ୍ତେ ଭବାନୀ
ଦେଖିଲେ ବାଲ୍ୟ ସଙ୍ଗିନୀ
ସ୍ନେହମୟୀ ଉମା ରକ୍ତାକ୍ତଶରୀର
ସମୁଦାମୀର-ମର୍ଦ୍ଦିନୀ ।

ବେଗେ ଧାଇଁ ଯାଇ କୁଣ୍ଠାଇ ପକାଇ
ସଖୀ କରେ ହେଲେ ବନ୍ଧ,
ଅତି ଆନନ୍ଦରେ କାନ୍ଦିଲେ ବେନିଏ
ହାସ ଦେଇ ସ୍କନ୍ଧେ ସ୍କନ୍ଧ ।

ବାକ୍ୟ ନ ସ୍ଫୁରଇ ଉଭୟଙ୍କ ମୁଖୁ
ଏକାନ୍ତ ମାତ୍ର ବୋବାଳି,
ପ୍ରତିହିଂସା-ବହ୍ନି ନିଭାଇଲେ କି ସେ
ଲୋଚନୁ ସଲିଳ ଢାଳି ?

ବିସ୍ମିତ ହୋଇଲେ ସୈନିକ ମଣ୍ଡଳୀ
ଦେଖି ଏହି ସୁମିଳନ,
ଚକିତ କଲା କି ବୀର ଶୂର ରସ
ପରସ୍ପର ଆଲିଙ୍ଗନ ?

ବେନି କୁମାରୀଙ୍କ ଯଶ ଗାନ କଲେ
ରଘୁବୀର, ଜାଠେଶ୍ବର,
ସୈନ୍ୟ ଦଳ ତହୁଁ ଯୋଗ ଦେବା ହେତୁ
କମ୍ପିଲା ରଣ-ପ୍ରାନ୍ତର ।

## ଗୀତ

(ଅଳ) ଗାଅରେ ଗାଅରେ  ଭାରତକୁମରେ !
ଶଶିକଳା ଉମା ଯଶ,
(ଦେଖ) ନାରୀକୁଳେ ଜନ୍ମି  କେତେ ପଦ୍ମିନୀ,
କରନ୍ତ ଅସତ ଧ୍ୱଂସ । ଘୋଷା ।
(ଅଳ) ପରପଦାନତା  ଏ ଭାରତମାତା
ହୃଦୟ ଅତି ସରସ,
(ଯେଣୁ) ନନ୍ଦନୀ ତାହାର  ଅସତ ସଂହାର
କଲେ ହୋଇ ପଣକଣ ।
(ଅନ୍ତ) ହୃଦେ ରକ୍ତବିନ୍ଦୁ  ଯେତେ ଦିନ ହିନ୍ଦୁ,
ଦେଖି ନାରୀ ଆଦରଣ
(କର) ପଥାନୁସରଣ,  ରଣେ ଦିଅ ପ୍ରାଣ,
ସ୍ୱାଧୀନ ହେବ ଅବଶ୍ୟ ।

ସମାପ୍ତ

